# ଲଘୁ କଥା

ଡଃ ଦେବୀ ପ୍ରସନ୍ନ ପଟ୍ଟନାୟକ



ଲଘୁକଥା

ଡଃ : ଦେବୀପ୍ରସନ୍ନ ପଟ୍ଟନାୟକ

ପ୍ରକାଶକ
ଲାର୍କ ବୁକ୍ସ
ଭୁବନେଶ୍ୱର-୭୫୧୦୦୧

ପ୍ରଥମ ପ୍ରକାଶ- ୧୯୯୮

ପ୍ରଚ୍ଛଦ
ଅସୀମ ବସୁ

ମୁଦ୍ରଣ
ଓଁକାର
ଆଚାର୍ଯ୍ୟ ବିହାର, ଭୁବନେଶ୍ୱର

ମୂଲ୍ୟ : ଟ. ୬୦. ୦୦

**LAGHUKATHA**
By
**Dr. Deviprasanna Pattnaik**

Published by
**LARK BOOKS**
Bhubaneswar - 751 001

1st Edition -1998

Cover
**ASIM BASU**

Printed at
**OMKAR**
Acharya Vihar, Bhubaneswar

**Price - Rs 60.00 Only**

ISBN-81-7375-054-8

# ମୁଖବନ୍ଧ

ଲଘୁକଥା କ'ଣ ? ଯେଉଁ କଥାର ପରମ୍ପରା ଆମ ଦେଶର ସଂସ୍କୃତି ସଂସ୍କାରଧାରାକୁ ବଞ୍ଚେଇ ରଖିଚି, ଯାହା ଆମ ଦେଶର ଅଧାରୁ ଅଧିକ ନିରକ୍ଷର ଲୋକଙ୍କୁ ଶିକ୍ଷିତ କରିବାରେ ସାହାଯ୍ୟ କରିଚି, ଏଇ ଲଘୁକଥାଗୁଡିକ ସେଇ ପରମ୍ପରାର ସର୍ଜନ । ଏଥିରେ ଆତ୍ମ ସମାଲୋଚନାଠାରୁ ସମାଜ ସଚେତନା ପର୍ଯ୍ୟନ୍ତ ନାନାଭାବରେ ଫେଣ୍ଟାଫେଣ୍ଟି ଦେଖିବାକୁ ମିଳିବ । ଏଥିରେ ହାଲୁକା ହସଠାରୁ ଆରମ୍ଭ କରି ମୁଣ୍ଡ ବଥେଇଲା ତତ୍ତ୍ୱପର୍ଯ୍ୟନ୍ତ ବିଭିନ୍ନ ପ୍ରକାର ସାମଗ୍ରୀ ପରିବେଷଣ କରାଯାଇଚି ।

କଥାରେ ଅଛି କାନବାଟେ କଥା ଗଲେ । ଏଇ ଲଘୁକଥା ଗୁଡିକ ଲେଖାରେ ବନ୍ଧା ନହୋଇ ଘଟ ବଦଳେଇ ଲୋକରୁ ଲୋକାନ୍ତରକୁ ଗଲେ ମୁଁ ଅଧିକ ଆନନ୍ଦିତ ହେବି ।

ଏଥିରୁ କେତେକ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଚି । ମୁଁ ସେମାନଙ୍କ ନିକଟରେ ଋଣ ସ୍ୱୀକାର କରୁଛି ।

ଭୁବନେଶ୍ୱର　　　　ଦେବୀପ୍ରସନ୍ନ ପଟ୍ଟନାୟକ

୫।୯।୯୮

# ସୂଚୀ

## ସୂଚୀ

# ନିଜ ଚିନ୍ତା

ଲୋକେ କହୁଛନ୍ତି ଯେ ଆମେ ପାଠପଢ଼ି ଜ୍ଞାନ ଅର୍ଜୁଛୁ । କିନ୍ତୁ ପାଠ ପଢ଼ି ଆମେ କଣ ବୁଦ୍ଧିଆ ହେଉଛୁ ? ପାଠ ପଢ଼ି ଆମେ ଆଧୁନିକ ହେଉଛୁ । ପଶ୍ଚିମମୁହାଁ ହେବାକୁ ଆଧୁନିକତାର ଲକ୍ଷଣ ବୋଲି କୁହାଯାଉଚି । ଭାରତୀୟ ଚଳଣି, ଭାରତୀୟ ପରମ୍ପରା, ଭାରତୀୟ ଚିନ୍ତନ, ଭାରତୀୟ ତତ୍ତ୍ୱ ବଦଳରେ ପଶ୍ଚିମ ଆଦର୍ଶକୁ ଗ୍ରହଣ କଲେ ଆମେ ଆଧୁନିକ ଓ ବିକଶିତ । ତା ନୋହିଲେ ଆମେ ରକ୍ଷଣଶୀଳ, ମଧ୍ୟଯୁଗୀୟ ଓ ବିକାଶଶୀଳ ।

ଆମକୁ କୁହାଯାଉଚି ଯେ ଭାରତକୁ ବ୍ରିଟିଶ୍ ଆଗମନ ଆଧୁନିକତାର ଉନ୍ମେଷ । ଖ୍ରୀଷ୍ଟିଆନ ମିସନାରୀମାନେ ଆମ ଦେଶକୁ ଶିକ୍ଷାର ଆଲୋକ ଆଣିଲେ । ଜାତିପ୍ରଥା ବିରୁଦ୍ଧରେ ଚେତନା ସେମାନେ ଆମ ଦେଶକୁ ଆଣିଲେ । ପୁଣି ଆମକୁ ଶିଖାଯାଉଚି ଯେ ଗଣତନ୍ତ୍ର ଭାରତକୁ ବ୍ରିଟିଶମାନଙ୍କର ଦାନ । ସବୁ ଅଧାସତ । ଦୁର୍ଭିକ୍ଷ ଓ ରୋଗ କବଳରୁ ମୁକ୍ତି ପାଇଁ ମିସନାରୀମାନଙ୍କର ଦାନ ଅତୁଳନୀୟ । ଦେଶକୁ ଛପାକଳ ଆଣି, ସ୍କୁଲ ବସେଇ ସେମାନେ ପଶ୍ଚିମଶିକ୍ଷାର ଦ୍ୱାର ଆମପାଇଁ ଖୋଲିଛନ୍ତି, ସନ୍ଦେହ ନାହିଁ । କିନ୍ତୁ ତାହା ଆମ ଶିକ୍ଷାର ସମାଧି ଉପରେ ଗପା ହେଲା । ସ୍ୱାଧୀନତା, ଜାତିଗତ ଅସମାନତା ଆଦି ବିଷୟରେ ଚେତନାର ମୂଲ୍ୟ ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ ଓ ଇଂରାଜୀ ଭାଷାକୁ ସ୍ୱୀକାର କରିବା । ଆଉ ଗଣତନ୍ତ୍ର ? ଭାରତରେ ଅନ୍ୟ ଅଞ୍ଚଳରେ ଲୋକେ କଳିଙ୍ଗ ଯୁଦ୍ଧ ଭୁଲିଗଲେ ସୁଦ୍ଧା ଓଡ଼ିଆଏ ତାହା ଭୁଲିବା ସମ୍ଭବ ନୁହେଁ । ଅଶୋକ କଳିଙ୍ଗର କୋଉ ରାଜାଙ୍କ ସାଙ୍ଗରେ ଯୁଦ୍ଧ କରିଥିଲେ, ଏତେ ଲୋକ ମଲେ ଯେ ଦୟାନଦୀ ରକ୍ତନଦୀ ପାଲଟି ଗଲା । ଏତେ ଲୋକ ବନ୍ଦୀ ହେଲେ ଯେ ତାହା କୌଣସି ଯୁଦ୍ଧର ଇତିହାସରେ ଦେଖା ନ ଥିଲା । ସାମ୍ରାଜ୍ୟ ଗଢ଼ିଥିବା ସମ୍ରାଟ ଅଶୋକଙ୍କର ଯେଉଁ ପରିବର୍ତ୍ତନ, ତା ମୂଳରେ ଯେ ଏଇ ଅଭୂତପୂର୍ବ ଲୋକଯୁଦ୍ଧ ଥିଲା ଏ କଥା କେହି ଅସ୍ୱୀକାର କରି ପାରିବେ ନାହିଁ । ଯେଉଁଠି ଲୋକଶାସନ ଏତେ ବଳିଷ୍ଠ ଥିଲା, ସେଇ ଲୋକଙ୍କୁ ଇଂରେଜମାନେ ଗଣତନ୍ତ୍ର ଶିଖେଇଲେ କହିବାଠାରୁ ହାସ୍ୟାସ୍ପଦ କିଛି ନାହିଁ । ତେବେ ବି ଆମେ ଏଇଆ ବିଶ୍ୱାସ କରୁଚୁ, ନିଜେ ପଢୁଚୁ ଆଉ ଆମ ପିଲାଙ୍କୁ ପଢ଼ଉଚୁ ।

ଦୁର୍ଭାଗ୍ୟର କଥା ଯେ ଆଜି ଲୋକେ ନିଜ ବ୍ୟବସ୍ଥା ନିଜେ ବୁଝୁନାହାଁନ୍ତି । ଲୋକଙ୍କ ନାଁରେ ଦଳେ ଲୋକ ଶାସନ ଚଳାଉଛନ୍ତି । ଏଇ ଲୋକେ ଯେତେବେଳେ ଅନ୍ୟ ଲୋକଙ୍କ ବିଷୟରେ ସିଦ୍ଧାନ୍ତ ନେଉଛନ୍ତି ସେତେବେଳେ ଆପଣା ଦୃଷ୍ଟିକୋଣରୁ ସେମାନଙ୍କୁ ବିଚାର କରୁଛନ୍ତି । ମୋର ଗୋଟିଏ କଥା ମନେ ପଡୁଚି । ଷଷ୍ଠ ଦଶକର ପ୍ରାରମ୍ଭିକ ସମୟର କଥା । ମୁଁ ସେତେବେଳେ ଆଦିବାସୀ ଭାଷା ଗବେଷଣା ପାଇଁ କୋରାପୁଟରେ ରହୁଥାଏ । ସେ ଅଞ୍ଚଳର ଆଦିବାସୀମାନଙ୍କ ଉନ୍ନୟନ ଯୋଜନା କରିବା ପାଇଁ ଜିଲ୍ଲା କଲେକ୍ଟର ସଭା

ଡ଼କେଇଥାନ୍ତି । ମୁଁ ଡ଼କରା ପାଇ ସେ ସଭାରେ ଯୋଗ ଦେଇଥିଲି । ସଭାରେ ଘଣ୍ଟାଏ ଉପରେ ଆଲୋଚନା ହେଲାପରେ କେତେ ଧୂଆଁ ନ ଥିବା ମଗନ ଚୁଲା ସେ ଜିଲ୍ଲାରେ ହେବ, କେତେ ବିଲାତି ଆଳୁ ଆଉ କେତେ ଚେରଚଣା ଚାଷ ହେବ ବ୍ୟବସ୍ଥା ହୋଇଗଲା । ଜିଲ୍ଲା କଲେକ୍ଟର ଶେଷକୁ ମତେ କିଛି କହିବାକୁ କହିଲେ । ମୁଁ ସେ ଯାଏ ପାଟି ଫିଟେଇ ନ ଥିଲି । ମୁଁ କହିଲି ଆପଣଙ୍କ ବିଚାରରେ ମୁଁ ବାକ୍‌ଶୂନ୍ୟ ହୋଇଯାଇଚି । ବିଲାତି ଆଳୁ ଆଉ ଚେରଚଣା କଣ ଆଦିବାସୀଙ୍କର ଖାଦ୍ୟ ? ଏଥିରେ ମୁହୂର୍ତ୍ତକ ପାଇଁ ଟିକିଏ ହଲଚଲ ହୋଇଗଲା । ଜଣେ କହିଲେ ଏଗୁଡ଼ିକ ହେଉଚି ନଗଦ ପଇସା ଫସଲ । ମୁଁ ପଚାରିଲି ଆଦିବାସୀ କେତେ ନଗଦ ବ୍ୟବହାର କରନ୍ତି ? ପୁଣି ଧୂଆଁ ନ ଥିବା ଚୁଲିର ଜରୁରୀ ସହର ଅଞ୍ଚଳରେ ବେଶୀ । ସେଠି ଯାର ବ୍ୟବହାର ନ କରି ଯେଉଁଠି ଧୂଆଁ ବଅଁଳିବାର ଆବଶ୍ୟକ ଅଙ୍ଗ, ସେଇ ଆଦିବାସୀ ବସ୍ତିରେ ଯାର ପ୍ରଚାର କରାଯାଉଚି କାହିଁକି ? ସେଦିନ କାହାରି ପାଖରେ ମୋ ପ୍ରଶ୍ନର ଜବାବ ନ ଥିଲା । ତେବେ ଯୋଜନା କରୁଥିବା ଲୋକେ ଯେ ଆପଣା ଦୃଷ୍ଟିକୋଣରୁ ଅପର ଲୋକଙ୍କର ଭାଗ୍ୟ ନିଷ୍ପତ୍ତି କଲାଭଳି ସିଦ୍ଧାନ୍ତ ନେଉଛନ୍ତି ଏ ବିଷୟରେ ମୋର ଟିକିଏ ବୋଲି ସନ୍ଦେହ ରହିଲା ନାହିଁ ।

ମୁଁ ଭାଷା ସମ୍ବନ୍ଧରେ ରାଜ୍ୟସ୍ତରୀୟ ଓ ଜାତୀୟସ୍ତରୀୟ ହଜାର ହଜାର ସଭାରେ ଯୋଗ ଦେଇ ଆସିଛି । ମୁଁ ସମସ୍ତଙ୍କର ମାତୃଭାଷା ଓ ସଂସ୍କୃତି ରକ୍ଷା ପାଇଁ ନିରନ୍ତର ଯୁଝୁଛି । କିନ୍ତୁ କିପରି ଅଧିକାଂଶ କର୍ମକର୍ତ୍ତା ଆପଣା ଦୃଷ୍ଟିକୋଣରୁ ବିଚାର କରି ଅପର ଭାଷା, ସାନ ଭାଷାର ଲୋପ ସପକ୍ଷରେ ଯୁକ୍ତି ବାଢ଼ିଛନ୍ତି, ଏ କଥା ମତେ ସ୍ତବ୍ଧ କରିଛି । ପଇସା ନାହିଁ । ତେଣୁ ଯେତେ କମ୍ ଭାଷାରେ ଶିକ୍ଷା ଦିଆଯିବ ସେତେ ଭଲ । ସୁନୀତିବାବୁ ଗୋଟିଏ ଲିପି ସପକ୍ଷରେ ଯୁକ୍ତି କରି ଆସିଲେ । କିନ୍ତୁ ଆପଣା ଲିପି ଛାଡ଼ି ସେଇ ଲିପିରେ ଲେଖିବା ନେତୃତ୍ୱ ଦେବାକୁ ସିଏ ଅମଙ୍ଗ । ଆମ ଦେଶରେ ଯୋଜନା ହେଉଚି । କିନ୍ତୁ ସିଏ ପର ଦୃଷ୍ଟିକୋଣରୁ ଯୋଜନା । କେତେବେଳେ ପର ଦୃଷ୍ଟିକୋଣରୁ ଆପଣା ପାଇଁ । କେତେବେଳେ ଆପଣା ଦୃଷ୍ଟିକୋଣରୁ ପର ପାଇଁ ।

ଗଣତନ୍ତ୍ରର ନାନା ବ୍ୟାଖ୍ୟା ରହିଚି । ବହୁ ମତରେ ଶାସନ । ବହୁ ଜନଙ୍କର ହିତ । ବହୁ ଜନଙ୍କର ସୁଖ ଆଦି ନାନା ଦୃଷ୍ଟିକୋଣରୁ ଏହାର ବିଚାର ହୋଇଛି । କିନ୍ତୁ ଏଥିରେ ଗୋଟିଏ ମୂଳକଥା ହଜିଯାଇଛି । ଅପର ଲୋକଙ୍କ ବିଷୟରେ ସିଦ୍ଧାନ୍ତ ନେଲାବେଳେ ଯେ ସେମାନଙ୍କ ଦୃଷ୍ଟିକୋଣରୁ ସମସ୍ୟାର ବିଚାର କରିବାକୁ ହେବ ଏ କଥା ଆମେ ଭୁଲି ଯାଉଛୁ । ଗଣତନ୍ତ୍ର, ମାନବୀୟ ବିଚାରବୋଧ ଆଦି ବିଷୟରେ ଖାଲି ଚିତ୍କାର କଲେ ହେବନାହିଁ । ଆପଣା କା' ଉପରେ ଲଗାମ ଲଗେଇ ଅପର ଦୃଷ୍ଟିକୋଣରୁ ବିଚାର କରି ଲୋକଙ୍କ ବିଷୟରେ ସିଦ୍ଧାନ୍ତ ନେଲେ ଯାଇ ଏ ସବୁ ତତ୍ତ୍ୱର ସାର୍ଥକତା ।



# ପରିବାର

ସ୍ୱାମୀ, ସ୍ତ୍ରୀ ଓ ପିଲା ଆଣବିକ ପରିବାର (Nuclear Family) । ଆମ ସମାଜରେ ସାଧାରଣତଃ ଝିଅ ଶାଶୁଘରକୁ ଯାଏ । ସ୍ୱାମୀଘରର ଭାଷାକୁ ଆପଣାଉ କରେ । ସ୍ୱାମୀଘରର ଚଳଣି ସାଂଗରେ ଆପଣାକୁ ମିଳାଇନିଏ । ସେଇଥିପାଇଁ ମାତୃଭାଷା ସାଧାରଣତଃ ବାପ ଘରର ଭାଷା । ଅବଶ୍ୟ କେରଳ ପରି ଜାଗାରେ ମା'ର ପ୍ରାଧାନ୍ୟ ସ୍ୱୀକାର କରାଯାଏ । ପୁଅ ଝିଅ ଘରକୁ ଯାଏ । ମାତୃକୈନ୍ଦ୍ରିକ ବ୍ୟବସ୍ଥାରେ ମଧ ମାମୁଙ୍କର ପ୍ରାଧାନ୍ୟ ରହିଥିଲା । କିନ୍ତୁ ଏ ସବୁ ପ୍ରଥା କ୍ରମେ ଭାଙ୍ଗି ଯାଉଚି ।

ସ୍ୱାମୀଙ୍କ ଘରକୁ ଆସି ଝିଅ ଦେଖେ ଯେ, ସ୍ୱାମୀଙ୍କ ଭାଇମାନେ ଓ ସେମାନଙ୍କ ପରିବାର ଏକାଠି ରହିଛନ୍ତି । ସ୍ୱାମୀଙ୍କର ବାପା ଏପରିକି ଦାଦି ଖୁଡ଼ୀ, ବଡ଼ବାପା ବଡ଼ମା ଏକାଠି ରହିଛନ୍ତି । ଏହାକୁ ପଶ୍ଚିମୀ ମତରେ ଆମ ଶିକ୍ଷିତଲୋକେ ଯୁକ୍ତ ପରିବାର ବୋଲି କହିଥାନ୍ତି । କିନ୍ତୁ ଏହା ସର୍ବତୋଭାବେ ଭୁଲ । ଯଦି ଏକାଧିକ ଆଣବିକ ପରିବାରର ସହାବସ୍ଥାନକୁ ଯୁକ୍ତ ପରିବାର କୁହାଯାଏ, ତେବେ ଭାରତର ପରିବାର ବା ହିନ୍ଦୁପରିବାରକୁ ଯୁକ୍ତ ପରିବାର କହିବାର ଯଥାର୍ଥତା କେଉଁଠି ଅଛି ?

ଆଜି ପଶ୍ଚିମୀ ସଭ୍ୟତାର ଚାପରେ ଆମ ସଂସ୍କୃତିକୁ ଆମେ ଭୁଲିଯିବାକୁ ବସିଲୁଣି । ଆମ ସଂସ୍କୃତିରେ ସମ୍ବନ୍ଧ ଦେଖାଇବାର ଗଭୀରତା ଖାଲି ଯୁକ୍ତ ପରିବାର ନୁହେଁ, ବାହାରକୁ ବ୍ୟାପିଚି । ଯେମିତି ମାମୁଁପୁଅ ଭାଇ, ପିଉସିଝିଅ ଭଉଣୀ କହିଲେ ଉପର ପାହ୍ଛିରେ ମା, ତାଙ୍କ ଭାଇ, ପୁଣି ତଳ ପାହ୍ଛିକୁ ଆସି ତାଙ୍କ ପୁଅ ସାଙ୍ଗରେ ସମ୍ବନ୍ଧ ଚିହ୍ନେଇ ଦିଆଯାଏ, କିମ୍ବା ବାପା, ତାଙ୍କ ଭଉଣୀ, ତାଙ୍କ ପୁଅ, ଏପରି ଭାବରେ ଅସ୍ମିତା ରହି ସମ୍ବନ୍ଧ ପ୍ରତିଷ୍ଠା କରାଯାଏ । ସେମିତି ମଉସା, ମାଉସୀ, ପିଉସା, ପିଉସୀ, ଦାଦା, ଖୁଡ଼ୀ ପରି ଶବ୍ଦରେ ମଧ ବିସ୍ତାରିତ ସମ୍ବନ୍ଧ ସୂଚାଇ ଦିଆଯାଇଥାଏ । ଇଂରାଜୀ cousion, uncle,auntରେ ଏଇ ସମ୍ବନ୍ଧସବୁ ଘୋଡେଇ ହୋଇଯାଏ । ପିଲାଦିନୁ ଆମ ପରିବାର ବାହାରକୁ ଯେଉଁ ଚେରଗୁଡ଼ିକ ଅପର ଅଥଚ ସମ୍ବନ୍ଧିତ ପରିବାର ସାଙ୍ଗରେ ଆମକୁ ଯୁକ୍ତ କରିଥାଏ ତାହା ଏଇ ଇଂରାଜି ମୋହରେ କ୍ରମେ ଲୁଚିଯାଉଚି ।

ଆମର ସୂର୍ଯ୍ୟବାନ୍ଧବ କଥାର ମାର୍ମିକତା ପଶ୍ଚିମୀ ମାପରେ ବଢ଼ିଉଠିଥିବା ପିଲାଏ ବୁଝିବେ କାହୁଁ ? ଯିଏ ରକ୍ତସଂପର୍କ ନୁହେଁ ଅଥଚ ଭାଇ ଭଉଣୀ, ପିଉସୀ, ମାଉସୀ ହୋଇ ବସିଛନ୍ତି, ସେ ସମ୍ବନ୍ଧ ତ ସମାଜକୁ ବାନ୍ଧି ରଖିବାର ସମ୍ବନ୍ଧ । ଗୋଟିଏ ତେଲି ପିଲା ଗୋଟିଏ କେଉଟ ପିଲା କଣିକାଏ ମହାପ୍ରସାଦ ଦେଇ ମୋ ବୋଉକୁ ବୋଉ କଲେ । ସେମାନେ ହେଲେ ମୋର ଭାଇ । ବିପଦ ଆପଦ, ଭଲ ମନ୍ଦରେ ସେମାନେ ଓ ସେମାନଙ୍କର ପରିବାରର ଲୋକେ ଆମ ଦୁଆରେ ଠିଆ ହେଲେ, ଆମେ ବି ତାଙ୍କ ଘରକୁ ଗଲୁ । ଏଇଥିରୁ ସମ୍ବନ୍ଧ

ବଢ଼ିଲା । ପରିବାରର ବି ବିସ୍ତାର ହେଲା ।

ଯା ବାହାରେ ସଙ୍ଗାତ, ମଇତ୍ର,ତୁଳସୀ, ଦଅଣା ପରି ସମ୍ପର୍କ ପାତିବା ତ ଅଛି । ସଙ୍ଗାତ ହେଲା ସମଗାତ୍ର । ଦିଓଟି ମଣିଷ କିନ୍ତୁ ଏକା ଦିହର କଳଣା କେତେ ସୁନ୍ଦର । ଏଥିରେ ଜାତିର ବନ୍ଧନ ନାହିଁ, ଧର୍ମର ବାଡ଼ ନାହିଁ । ମୋ ଭଉଣୀ ରାଧାନାଥ ରଥଙ୍କ ଝିଅର ସଙ୍ଗାତ । ମୋ ଭାଇ ଅନ୍ତର ଭାଇ ତୁଙ୍ଗଙ୍କ ସଙ୍ଗାତ । ଏମିତିକି ପଠାଣ, ପାଣ ପିଲାଙ୍କ ସାଙ୍ଗରେ ବି ଆମର ସଂପର୍କ । ମୋର ମନେଅଛି ମୁଁ ବାହାହେଇ ପ୍ରଥମେ ଯେତେବେଳେ ଶ୍ୱଶୁର ଘରକୁ ଗଲି ମୋ ସାଙ୍ଗରେ ଡ୍ରାଇଭର ମଳିକ ଯାଇଥିଲା । ଖାଇ ସାରିଲା ପରେ ବାସନ ଉଠେଇଲା ବେଳକୁ ମୋ ଶାଶୁ କହିଲେ କୋଉଁ ପାଣ କଣ୍ଡରାଙ୍କ ବାସନ ଧୁଆଇଲେ । ବାସ୍, ସେତିକି । ସେଇଦିନୁ ମଳିକ ଆମ ପରିବାରର ଜଣେ ହୋଇଗଲେ । ମୋ ଶାଶୁଘରେ ଆଉ ଆମ ଘରେ ତାଙ୍କ ଚଳପ୍ରଚଳ ଅବାରିତ ହେଲା । ଯୋଉ ଝିଅ ଆପଣା ବନ୍ଧୁ ପାଟିରେ ତୁଳସୀ ପାଖୁଡ଼ାଟିଏ କିମ୍ବା ଦଅଣା ପତ୍ର ଟେକାଏ ଦେଇ ଦଅଣା କି ତୁଳସୀ ହେଲେ, ସେଇ ସଂପର୍କର ମଧୁରତା ଆଜିକାଲିର ଭାଙ୍ଗି ଯାଉଥିବା ସମାଜ ବ୍ୟବସ୍ଥାରୁ ମାପିବା ଅସମ୍ଭବ । ପରିବାରକୁ ପରିବାର ସାଙ୍ଗରେ ଯୋଡ଼ି ସମାଜ ଗଢ଼ିବାର ଏ ଯେଉଁ ବ୍ୟବସ୍ଥା ଯାକୁ ଯୁକ୍ତ ପରିବାର, ଏକକ ପରିବାର ମାପକାଠିରେ ଧରି ହେବକି ? ପଶ୍ଚିମୀ ଅହମିକାରେ ପୃଥିବୀର ବିଚାର ପଶ୍ଚିମ ମାପକାଠିରେ କରିବାକୁ ହେବ ? ଆମ ଆତ୍ମପ୍ରତ୍ୟୟର ଅଭାବ ଆଉ ପଶ୍ଚିମର ଗୌରବ ଗାଇଗାଇ ଆମ ଦାସତ୍ୱବୋଧ ଏତେ ବଢ଼ିଯାଇଚି ଯେ ଆମ ଅଜଣାରେ ଆମ ସଂସ୍କୃତିର ଚେର କ୍ଷୟ ହୋଇ ଚାଲିଚି ।



# ପଶ୍ଚିମର ପରିବାର

ପଶ୍ଚିମ ପରିବାର କଥା ମନେ ପଡ଼ିଲେ ପ୍ରଥମେ ଛାଡ଼ପତ୍ର ସମସ୍ୟା ବଡ଼ ହୋଇ ଦିଶେ । ୟୁରୋପର ସବୁ ଦେଶରେ ମୁଁ ଛାଡ଼ପତ୍ର ଦେଇଥିବା ସ୍ୱାମୀ ସ୍ତ୍ରୀଙ୍କୁ ଏହାର କାରଣ ପଚାରିଛି । ସୁଇଡ଼େନର ଗୋଟିଏ ପରିବାରରେ ସ୍ୱାମୀ ରାଜନୀତି ବିଜ୍ଞାନ ଅଧ୍ୟାପକ ଓ ସ୍ତ୍ରୀ ମନସ୍ତତ୍ତ୍ୱର ଡ଼ାକ୍ତର । ଗୋଟିଏ ପୁଅ ଓ ଗୋଟିଏ ଝିଅ । ମୁଁ ଛାଡ଼ପତ୍ରର କାରଣ ପଚାରିଲି, ଜବାବ ମିଳିଲା ମାନସିକ ବେଖାପ ଛାଡ଼ପତ୍ରର କାରଣ । ଶାରୀରିକ ବେଖାପ କଥା ଶୁଣିଛି । ପିଲା ଜନ୍ମ କରିବାକୁ ସ୍ୱାମୀ ବା ସ୍ତ୍ରୀର ଅପାରଗତା ଛାଡ଼ପତ୍ରର କାରଣ ହେଲେ ଏହି କାରଣକୁ ହୁଏତ ସ୍ୱୀକାର କରାଯାଇପାରେ । କିନ୍ତୁ ମାନସିକ ବେଖାପ କଣ ? ପଚରାଉଚରା କରିବାରେ ଜଣାଗଲା ଯେ, ସ୍ୱାମୀ ତୃତୀୟ ସନ୍ତାନ ଚାହିଁଲାବେଳେ ସ୍ତ୍ରୀ ଦୁଇ ଉପରକୁ ଯିବାକୁ ନାରାଜ । ସ୍ତ୍ରୀ ଆପଣା ଧନ୍ଦା ଛାଡ଼ି ଘର କାମରେ ମନ ଦେବା କିମ୍ବା ସ୍ୱାମୀଙ୍କ କାମରେ ସାହାଯ୍ୟ କରିବା ସ୍ୱାମୀଙ୍କର ଇଚ୍ଛା ହେଲାବେଳେ ପାଠପଢୁଆ ଯୋଗ୍ୟା ସ୍ତ୍ରୀ

ଆପଣା କାମରେ ବ୍ୟସ୍ତରହିବା ଆଦି ମାନସିକ ବେଷ୍ଟାପର କାରଣ । ଏହି କ୍ଷେତ୍ରରେ ବାପା ମା କେହି ଦ୍ୱିତୀୟ ବିବାହ କରିନାହାନ୍ତି । ପୁଅ ଝିଅ ଉଭୟଙ୍କ ସ୍ନେହ ପାଇ ବଢୁଛନ୍ତି ।

ଡେନମାର୍କ ଦମ୍ପତିଙ୍କ କଥା ଅଲଗା । ଛାଡ଼ପତ୍ର ଦେଲାପରେ ଉଭୟେ ବାହା ହୋଇଛନ୍ତି । ଛାଡ଼ପତ୍ରର କାରଣ ହେଉଛି ଅପାକଳ ମନ । ବାହା ହେଲାବେଳକୁ ମନ ପାକଳ ହୋଇ ନଥିଲା । ବାହାଘର ହୋଇ ପିଲାଝିଲା ହେଲାପରେ କ୍ରମେ ଉଭୟେ ଅନୁଭବ କଲେ ଯେ ପ୍ରତ୍ୟେକ ଯାହା ଖୋଜୁଛନ୍ତି ତାହା ଅପରପାଖରେ ନାହିଁ । ତେଣୁ ଛାଡ଼ପତ୍ର ଓ ପୁନର୍ବିବାହ ।

ଜର୍ମାନୀରେ ଜଣେ ଅଧ୍ୟାପକ ତାଙ୍କର ସୁନ୍ଦରୀ ଯୋଗ୍ୟା ସ୍ତ୍ରୀକୁ ଛାଡ଼ପତ୍ର ଦେଇ ଯେତେବେଳେ ଆଉ ଜଣଙ୍କୁ ବାହାହେଲେ ସେତେବେଳେ ବନ୍ଧୁମହଲରେ ନାକଟେକା ହେଲା । ଦ୍ୱିତୀୟ ସ୍ତ୍ରୀ ସୁନ୍ଦରୀ । ତାଙ୍କଠି ବଙ୍ଗାଲୀ ରକ୍ତ ଥିବାରୁ ଚେହେରାରେ ଆକର୍ଷଣ ଅଛି । କିନ୍ତୁ ପ୍ରଥମ ସ୍ତ୍ରୀଙ୍କର ଯୋଗ୍ୟତା ନାହିଁ । ବନ୍ଧୁମାନଙ୍କ କହିବା କଥା ଦେହର ଆକର୍ଷଣ ହିଁ ଏହି ବିବାହ ବିଚ୍ଛେଦ ଓ ପୁନର୍ବିବାହର କାରଣ ।

ଜର୍ମାନୀରେ ଭାରତୀୟ ଜର୍ମାନ ଓ ଭାରତୀୟ ଭାରତୀୟଙ୍କ ବିବାହ ବିଚ୍ଛେଦର ଶୋଚନୀୟ ପରିଣତି ମନକୁ ବିକଳ କରେ । ଯେଉଁ ଭାରତୀୟ ପାଠପଢୁଆ ଝିଅ ଜର୍ମାନୀରେ ରହିବା ପାଇଁ ହେଉ, ୟୁରୋପୀୟ ଜୀବନର ସ୍ୱପ୍ନ ଯୋଗୁଁ ହେଉ କିମ୍ବା ଗୋରା ସ୍ୱାମୀ ପାଇବା ପାଇଁ ହେଉ ଜର୍ମାନ ବାହା ହୁଅନ୍ତି, ପିଲାପିଲି ହେଲା ପରେ ଛାଡ଼ପତ୍ର ଦିଆନିଆ ହେଲା ପରେ ବଞ୍ଚିବା ପାଇଁ ସେମାନଙ୍କର ଛଟପଟ ମନକୁ ପୀଡ଼ା ଦିଏ । ପଶ୍ଚିମର ଦେଖାଶିଖା ଜଣେ ଭାରତୀୟ ଛାଡ଼ପତ୍ର ଦେବାରେ ସିଦ୍ଧହସ୍ତ । ସେ ଭାରତୀୟ ସ୍ତ୍ରୀକୁ ଛାଡ଼ପତ୍ର ଦେଇ ଜର୍ମାନ ସ୍ତ୍ରୀ ବାହା ହେଲେ । ଜର୍ମାନ ସ୍ତ୍ରୀକୁ କିଛିଦିନ ପରେ ଛାଡ଼ପତ୍ର ଦେଲେ । ଜର୍ମାନୀରେ ଆଉ ସୁବିଧା ହେବ ନାହିଁ ଏକଥା ଜାଣି ସେ ପୁଣି ଭାରତକୁ ଫେରିଲେ । ଗୋଟିଏ ଝିଅକୁ ବାହା ହେବାକୁ ସବୁ ଠିକ୍ ହେଲା । ବାହାଘର ଆଗଦିନ ଝିଅର ଭାଇ ପଚାରିଲା ଆପଣଙ୍କ ଘରେ କାମ କରିବାକୁ ଲୋକ ଅଛନ୍ତି ? ଭଦ୍ରଲୋକ ମନା କଲେ । ତେବେ ଆପଣ ଚାକରାଣୀ ଖୋଜୁଛନ୍ତି ? ବାସ୍, ଏତିକିରେ ବାହାଘର ଭାଙ୍ଗିଗଲା । ତା ପରେ ଭଦ୍ରଲୋକ ଜଣେ ଅଧ୍ୟାପିକାଙ୍କୁ ଭେଟି ବାହାହେବା ପ୍ରସ୍ତାବ କଲେ । ସପ୍ତାହେ ଭିତରେ ବାହାଘର ହେଲା । ଭଦ୍ରମହିଳା ଜର୍ମାନୀ ଆସିଲେ । ଭଦ୍ରଲୋକଙ୍କ କଥାରେ ଚାକିରୀରୁ ଇସ୍ତଫା ଦେଲେ । ତାପରେ ଭଦ୍ରଲୋକଙ୍କର ସ୍ୱରୂପ ପ୍ରକାଶ ପାଇଲା । ଭଦ୍ରଲୋକ ସ୍ତ୍ରୀକୁ ଛାଡ଼ପତ୍ର ଦେଲେ । କଚେରୀରେ ମୋକଦ୍ଦମା ହେଲା । ଯା ପୂର୍ବରୁ ମୋକଦ୍ଦମା ହୋଇ ଜର୍ମାନ ସ୍ତ୍ରୀକୁ ଭରଣପୋଷଣ ମିଳିଥାଏ । କିନ୍ତୁ ଜର୍ମାନ ଅଦାଲତ ଏତେ ପକ୍ଷପାତଗ୍ରସ୍ତ ଯେ ଭାରତୀୟ ସ୍ତ୍ରୀକୁ ଭରଣପୋଷଣ ମିଳିଲା ନାହିଁ । ଭଦ୍ରମହିଳା ଅଥଳ ପାଣିରେ ପଡ଼ିଲେ ।

କାନାଡ଼ାରେ ଭାବେଣି ଯେ ବାହାହୁଅନ୍ତୁ ବା ଏକାଠି ରହନ୍ତୁ, ଶତକଡ଼ା ପଚାଶ

କ୍ଷେତ୍ରରେ ଛାଡ଼ଛାଡ଼ ହେଉଛି । ଆଉ ଆମେରିକା କଥା କହିଲେ ନ ସରେ । ଜଣେ ମୁରବୀ ଥିବା ପରିବାର ସଂଖ୍ୟା ଗତ ଦଶବର୍ଷରେ କୋଡ଼ିଏ ଲକ୍ଷ ବଢ଼ିଚି । ଗୋଟିଏ ହିସାବ ଅନୁସାରେ ଶତକଡ଼ା ୭୨ ପିଲା ଭଙ୍ଗା ପରିବାରରୁ ଆସିଛନ୍ତି । ଶତକଡ଼ା ୫୭ ପିଲା ଅଲୋଡ଼ା ଓ ଅଟାନକ । ଜେଲ ଯାଇଥିବା ପୁରୁଷଙ୍କର ନବେ ପ୍ରତିଶତ ପିଲା ଉଣିଶି ବର୍ଷରୁ କମ୍ ପୁରୁଷଙ୍କର ପିଲା ।

ଆମେରିକା ପିଲାଙ୍କ ଅବସ୍ଥାରୁ ଆମେରିକା ପରିବାରର ସ୍ଥିତି ବୁଝିହେବ । ଆମେରିକାରେ ପ୍ରତିଦିନ ୬୦ ଲକ୍ଷ ପିଲା ଭୋକରେ ଶୁଅନ୍ତି । ଲକ୍ଷେ ପିଲା ପ୍ରତିଦିନ ଘର ବାହାରେ ଶୁଅନ୍ତି । ପ୍ରତି ପାଞ୍ଚଜଣରେ ଜଣେ ପିଲା ଦରିଦ୍ର । ପ୍ରତି ଦଶଜଣରେ ତିନିଜଣ ପିଲାଙ୍କର ଟୀକା ନେବାର ସାମର୍ଥ୍ୟ ନାହିଁ । ଏଇଥିରୁ ଆମେରିକା ପରିବାରର ସ୍ଥିତି ସହଜରେ ବୁଝିହେବ । ଆଜିକାଲି ଆମେରିକାରେ ବାପା ମା ଦୁଇ ମୁରବୀ ପରିବାରକୁ ପାରିବାରିକ ମୂଲ୍ୟର ଆଦର୍ଶ ବୋଲି ସ୍ୱୀକାର କରାଯାଉନି ।

ଯେଉଁମାନେ ପଶ୍ଚିମର ଏଇ ସାମାଜିକ ସ୍ଥିତିକୁ ଆଧୁନିକତା ନାଁରେ ସମର୍ଥନ କରନ୍ତି ସେମାନଙ୍କ କବଳରୁ ଭଗବାନ ଆମ ଦେଶକୁ ରକ୍ଷା କରନ୍ତୁ ।



# ବୁଢ଼ାପଣ

ବୁଢ଼ା ହବାକୁ ସମସ୍ତଙ୍କର ଡ଼ର । ଆଖିକଣର ଆଉ କପାଳର କୁଞ୍ଚା ଗାର ଲୁଚେଇବା ପାଇଁ ଯେତେ ସାଧନ ଆଉ ସାଧନା ଦେଖିଲେ ହସ ଲାଗିବ । ଆଖି ଦୂରୁଣ କମିଯିବା, ଦାନ୍ତ ନଖ ହୁଗୁଳା ହୋଇଯିବା, ବାଳ ପାଚିଯିବା ଅଥବା ପଡ଼ିଯିବା, ଚମ ଲୋତରା କୋତରା ହୋଇଯିବା ବୁଢ଼ାପଣିଆର ବାହାର ରୂପ । ଏ ସବୁକୁ ଦୂରେଇ ରଖିବା ପାଇଁ ଖିଜାବ୍‌ଜିତ ଠାରୁ ଚ୍ୟବନପ୍ରାସ ପର୍ଯ୍ୟନ୍ତ ଆଉ ଯୋଗାସନ ଠାରୁ ସକାଳ ସଞ୍ଜ ଦଉଡ଼ ପର୍ଯ୍ୟନ୍ତ କେତେ ଯେ ଉପାୟ କହିଲେ ନ ସରେ ।

ଯୁବାବସ୍ଥାରେ ଆପଣା ସ୍ତ୍ରୀକୁ ଘେରି ଘରସଂସାର କଳ୍ପନା ଜଳ୍ପନା । ସ୍ତ୍ରୀ ନୋହିଲେ ମଧ ଆଧୁନିକ କାଳରେ ଯାହା ସାଙ୍ଗରେ ଏକାଠି ରହାଯାଏ ସେଇ ଏକାଠି ରହିବା ନ ରହିବାକୁ ଘେନି କେତେ ଚିନ୍ତା, କେତେ କଳ୍ପନା । କିନ୍ତୁ ବୁଢ଼ାକାଳରେ ପର ସ୍ତ୍ରୀକୁ ଦେଖିଲେ ଲାଜ ଗଢ଼େ । ଭଲ ଜିନିଷ ଦେଖି ପିଲାବେଳେ ପାଟିରୁ ନାଳ ଗଡ଼ିବା ଆଉ ଭଲ ଜିନିଷ ଭାବି ବୁଢ଼ାଦିନେ ପାଟିରୁ ନାଳ ବୋହିବା ଗୋଟିଏ ଦିଗରୁ ଏକାକଥା ।

ଯୁବାକାଳରେ ବଡ଼ବଡ଼ କାମର ସ୍ୱପ୍ନ, ବଡ଼ବଡ଼ ଆଶା । ବୁଢ଼ାକାଳକୁ ସାନସାନ କଥା ମନେ ପକାଇବାରେ ଆନନ୍ଦ । ବୟସ ବେଳେ ବଡ଼ ସାନ ସବୁ କାମକୁ

ଧରିନିଆଯାଇଥାଏ । ବୁଢ଼ାଙ୍କୁ ବଡ଼ ପାହାଡ଼ ଚଢ଼ିବା ବେଳେ ଯେଉଁ ସାନ ସାନ ଖୋପ, ପଥର ପଥର ଭିତରେ ଯେଉଁ ସାନ ସାନ ଫାଟ ସେଇ ସବୁ ବିଶେଷ କରି ମନେହୁଏ । କୋଉଦିନ କାହା ପାନରୁ ଚୂନ ଖସି ଯାଇଥିଲା, କାହା ଖୋସାରୁ ଫୁଲ ଖସି ପଡ଼ିଥିଲା, କାହା ଦରୋଟି କଥାରେ କୋଉ ଶବ୍ଦ କେମିତି ଉଚ୍ଚାରଣ ହେଉଥିଲା, ବୁଢ଼ାଙ୍କୁ ଏଇସବୁ ବଡ଼ ହୋଇ ଦିଶେ ।

ପିଲାବେଳୁ ଦିନ ବାର ଗଣାରୁ ଆଉ ବଡ଼ ହେବା ସାଙ୍ଗେ ସାଙ୍ଗେ ସବୁକାମ ମାପିଚୁପି କରିବାରୁ ଦିନ ମାସ ବର୍ଷରେ ସମୟ ଗଣାହୁଏ । ବୁଢ଼ାବେଳେ ସମୟ ଛୋଟ ହୋଇଯାଏ କିମ୍ବା ଲମ୍ବା ହୋଇଯାଏ । ପିଲା ଖେଳେଇବା ଦିନ, ଘର ଜଗିବା ଦିନ, ବଜାର କରିବା ଦିନର ଚକ୍ର ଗତିରେ ସପ୍ତାହ ମାସର ଗଣନା ଭୁଲ ହୋଇଯାଏ । ନୋହିଲେ ହଜିଯାଇଥିବା ଦିନଗୁଡ଼ିକରେ ସ୍ମୃତିର ଅସରା ସୂତା ମନକୁ ଗୁଡ଼େଇ ତୁଡ଼େଇ ଏମିତି ଆକଟାମାକଟା କରିଦିଏ ଯେ ସମୟ ଲମ୍ବି ଲମ୍ବି ତହିଁରେ ମାସ ବର୍ଷର ହିସାବ ହଜିଯାଏ ।

ଆଖି ଫିଟିଲା ଦିନୁ ମଣିଷର ଅନ୍ଧାରରୁ ଆଲୁଅକୁ ଉତ୍ତରଣ । ଆଲୁଅକୁ ଚାହିଁ ବାଟ ଚାଲୁଥିବା ଲୋକର ଅନ୍ଧାର ପ୍ରତି ଧ୍ୟାନ ନ ଥାଏ । ତା ପୁଣି ଯୌବନର ଉଜ୍ଜ୍ୱଳତା ବେଳେ । କିନ୍ତୁ ସୂର୍ଯ୍ୟ ଢଳିଯିବା ବେଳେ ପଛକୁ ପଡୁଥିବା ଲମ୍ବା ଛାଇ, ଘୁଞ୍ଚି ଘୁଞ୍ଚି ଯାଉଥିବା ଆଲୁଅ ପଛରେ ଅନ୍ଧାର ଝାପ୍‌ସା ସ୍ମୃତି ହୋଇ ଆଗକୁ ପଛ ସହିତ ବାନ୍ଧିରଖେ । ବୟସ୍କ ଲୋକ ଅଳ୍ପ ବୟସ୍କଙ୍କୁ ଏଇ ଅଭିଜ୍ଞତା କଥା ଶୁଣେଇବାକୁ ବ୍ୟଗ୍ର । କିନ୍ତୁ ଶୁଣିବାକୁ ବେଳ କାହିଁ ? ସମସ୍ତେ ଆପଣା ଆପଣା ଅଭିଜ୍ଞତା ସଂଗ୍ରହରେ ବ୍ୟସ୍ତ ।

ବାନ୍ଧି ଜାଣିଲେ ମଥା ସୁନ୍ଦର । କହି ଜାଣିଲେ କଥା ସୁନ୍ଦର । ସେମିତି ଦେଖି ଜାଣିଲେ ବୁଢ଼ାପଣିଆ ସୁନ୍ଦର । ବୁଢ଼ାପଣିଆର ଆପଣା ଗୌରବ ଅଛି । ଆପଣା ମହକ ଅଛି । ଦେଖି ନ ଜାଣିଲେ ବୁଢ଼ାପଣିଆ ଅସୁନ୍ଦର । ସିଏ ଆପଣା ଉପରେ ଆଉ ପର ଉପରେ ବୋଝ ।

ବୁଢ଼ା ପିଲାର ମାପ ବୟସର ତାରତମ୍ୟରେ କେବଳ ନୁହେଁ । ମନର ତାରତମ୍ୟ ଏହାର ଆଉ ଏକ ମାପ । ଅନେକ ପିଲା ମନରେ ବୁଢ଼ା, ଆଉ ଅନେକ ବୁଢ଼ା ମନରେ ଯୁବକ । ବ୍ୟବହାର ଦୃଷ୍ଟିରୁ ବାଳବୃଦ୍ଧ ସମାନ ବୋଲି ଯେଉଁ କଥା ଅଛି ତା ଯା ଠାରୁ ଭିନ୍ନ ।

ବୁଢ଼ାପଣିଆ ବଡ଼ ସ୍ପର୍ଶକାତର । ଛୁଇଁଦେଲେ ତା ଝାଉଁଳି ଯାଏ । ବୁଢ଼ାପଣିଆ ବଡ଼ ଅଭିମାନୀ । ଏଇ ଅଭିମାନରୁ ହିଁ ବୁଢ଼ାପଣିଆର କଷ୍ଟ । ଅହଂକାର ନୁହେଁ, ଅଭିମାନ ହିଁ ବୁଢ଼ାପଣିଆର ପରିଚୟ ।



# ଲୁଚକାଳି

ପିଲାଦିନେ କେତେ ଲୁଚକାଳି ଖେଳିଚି । ଅନ୍ଧାର ଘର କଣରେ । ଖଟ ତଳେ, ନିଛାଟିଆ ବାରଣ୍ଡାରେ ଢ଼ୋଲି କି ଓଳିଆ ପଛରେ ଲୁଚି ଧରା ନ ପଡ଼ିବାରେ କେତେ ବାହାଦୁରୀ ନେଇଚି । ଆଖିବୁଜା 'ଚୋର' ଆଉ ଧରା ନ ପଡ଼ିଲା ଜାଗାରେ ଛପିଥିବା ଲୋକ ଭିତରେ ଲୁଚକାଳି ଖେଳ ପଛରେ ଜୀବନ ମରଣର ଯେଉଁ ଗଭୀର ଚିତ୍ର ନେସିହୋଇ ରହିଚି ତାହା ଆଜିଯାଏ କେବେ ମନକୁ ଆସିନି । ଆଜି ଡ଼ାକ୍ତରଖାନାରେ ବସି ଜୀବନ ମରଣର ଲୁଚକାଳି ଖେଳ ଦେଖିଲାବେଳେ ପିଲାଦିନର ଲୁଚକାଳି ସାଙ୍ଗରେ ସମ୍ବନ୍ଧ ସ୍ପଷ୍ଟ କରି ଦିଶୁଛି ।

ଡ଼ାକ୍ତରଖାନାକୁ କେତେ ଆଶା ନେଇ କେତେ ରୋଗୀ ଆସୁଛନ୍ତି । ଯାହାର ଡ଼ାକ ଆସିଲା ସିଏ ଯାଉଚି । ସମାଜରେ ଉଚ, ନୀଚ, ଧନୀ, ଗରୀବ, ପିଲା, ବୁଢ଼ା ବାଛବିଚାର ନାହିଁ । ଗୋବିନ୍ଦ ଚନ୍ଦ୍ରରେ 'ବାଛିନେବ ଜଣା ରଖିବ ପାଚେଲା ଦେବଟି ଦାରୁଣ ଦୁଃଖ' ବୋଲି ଯାହା କୁହାଯାଇଚି ତାହା କେତେ ସତ ? ଜୀବନର ପ୍ରତି ମୁହୂର୍ତ୍ତ ଯେ ମରଣ ସାଙ୍ଗରେ ଲୁଚକାଳି ଖେଳ ଏଇ କଥା ବୁଝିଲେ ଦୁଃଖ ଲାଘବ ହୁଅନ୍ତା ପରା । ଏଇ ଲୁଚକାଳି ଖେଳରେ ଯିଏ ଧରା ପଡ଼ିଗଲା ସିଏ ମଲା । ଜୀବନଟା ଯାକ ଧରା ନ ପଡ଼ିବା ପାଇଁ ସାଧ ସାଧନା ।

ରବୀନ୍ଦ୍ରନାଥ 'ମରଣରେ ତୁହୁଁ ମମ ଶ୍ୟାମ ସମାନ'ରେ ଯେଉଁ ଗୀତ ଆରମ୍ଭ କରିଛନ୍ତି 'ଜୀବନ ବଲ୍ଲଭ ମରଣ ସୌଁ ଅଧିକ ଅବ ତୁହୁଁ ଦେଖ ବିଚାରି' ରେ ତାର ଶେଷ । ଇଏ ବି ଏକପ୍ରକାର ଲୁଚକାଳି ଖେଳ । ଶବ୍ଦର ଲୁଚକାଳି । ମରଣକୁ ଶ୍ୟାମ ସଙ୍ଗେ ସମାନ କହିଲା ପରେ ଜୀବନ ବଲ୍ଲଭ ଶ୍ୟାମଙ୍କୁ ମରଣଠୁଁ ଅଧିକ କହିବାରେ ଯେଉଁ ପହଳି ଅଛି ତାହା ବୁଝିବାର କଥା । ଜୀବନ ମରଣ ଗୋଟିଏ ପଇସାର ଦୁଇ ପାଖ । ସମାନ । ହେଲେ ମରଣ ହେଉଚି ଚୋର ହାତରେ ଧରାପଡ଼ିବା କଥା । ତେଣୁ ଜୀବନ ହେଉଚି ମରଣଠୁ ଅଧିକ । ଜାଣନ୍ତକୁ ଘେନି ଜୀବନ । ଅଜଣାପଥର ଯାତ୍ରା ମରଣ । ତେଣୁ ଜୀବନତତ୍ତ୍ୱ ମରଣତତ୍ତ୍ୱର ଉପରେ ।

ଆଶା ନିରାଶା, ହସ କାନ୍ଦର ଗୋଡ଼ିଆଗୋଡ଼ି ଆଲୁଅ ଅନ୍ଧାରର ଲୁଚକାଳି ଖେଳ ପରି । ସୁଖ ଦୁଃଖତ ଚକ ପରି ବୁଲୁଥାଚି ।

ସୁଖ ବୋଲି ଯାହା ଜନନେତ୍ରେ ଦିଶେ ।<br>
ହାତୁ ଆସେ ହାତେ ପଡ଼ିବା ପାଇଁ ସେ ।

ଜଣକ ହାତରୁ ଡ଼ିଆଁମାରି ଦେଲେ ତା ମନରେ ଦୁଃଖ ଆଉ ଯାହା ହାତକୁ ଆସିଲା ତାର ସୁଖ । ସମୁଦ୍ର ଲହରୀର ଢ଼ଙ୍ଗା ପରି ଉପରକୁ ଉଠିଲେ ଆଶା ଆଉ ତଳକୁ ପଡ଼ିଗଲେ ନିରାଶା । ରୋଗୀ ମନରେ ଯେମିତି ରୋଗୀକି ଜଗି ଆସିଥିବା ଲୋକଙ୍କ ମନରେ ସେମିତି

ଆଶା ନିରାଶାର ତରଙ୍ଗ କେତେବେଳେ ମନକୁ ଉଡ଼ାଏ, କେତେବେଳେ ବୁଡ଼ାଏ । ଏଇ ଭଳି ହଜିଯିବା ହିଁ ମରଣ । ଲୁଚକାଳି ଖେଳରେ ମଲା ।

ଲୁଚକାଳି ଖେଳରେ ଆଖିବୁଜାଳି ହେଉଛି ବୁଢ଼ିଆଣୀ । ଜୀବନ ମରଣର ଲୁଚକାଳିରେ ବୁଢ଼ିଆଣୀ ହୁଏତ ନାହିଁ, ଥିଲେ ବି ସିଏ ସହଜେ ଦେଖା ପଡ଼େନି । ଆପେ ଆପଣାର ଆଖି ବାନ୍ଧି ବୁଢ଼ିଆଣୀ ଜାଲର ଚକ୍ରରେ ଧାଇଁ ବୁଲିବା ହିଁ ସାର । ଏଇ ଚକ୍ରର ଗାର ପୁଣି ଏତେ ପତଳା ଯେ ସିଏ ବି ଦେଖି ହୁଏ ନାହିଁ । ଆପଣା ଆପଣା ଅହମିକାରେ ଅନ୍ଧ ମଣିଷ ଲୁଚିବା ପାଇଁ ଜାଗା ଆପେ ଠିକଣା କରୁଚି ବୋଲି ଭାବି ହେଣ୍ଡି ମାରେ । ଧରା ପଡ଼ିଲାବେଳକୁ ନେଡ଼ିଗୁଡ଼ କହୁଣୀକୁ ବୋହିଗଲାଣି । ଚୋର କେତେବେଳେ ଯେ ଲୁଚିବା ଯାଗାଟି ଦେଖି ନେଇଚି ତା ହେଜ ହେଲା ବେଳକୁ ଆପେ ମଲା ।



# ଭାଗ୍ୟ

ଜାନବାଟେ କଥା ଗଲେ । ଗୋଟିଏ କଥାରୁ ଆଉ ଗୋଟିଏ କଥା ଖିଅ ମେଲି କେମିତି ଫୁଟିଉଠେ ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଆମ ଭାରତୀୟ ପଦ୍ଧତିରେ ଗପଟିଏ ଆରମ୍ଭ ହେଲେ ସେଥିରୁ ଶାଖା ପ୍ରଶାଖା ବାହାରି ମୂଳକୁ ଫେରିଲା ବେଳକୁ ରାମାୟଣ କି ମହାଭାରତ ।

ସେଦିନ କଥା ପଡ଼ିଥିଲା ତ୍ରିପାଠୀ ବାବୁଙ୍କ ଶାଶୁଙ୍କ ମରଣ ବିଷୟରେ । ବୁଢ଼ୀ ଅଢ଼ଷଠୀ ବର୍ଷର ହେଲେ ବି ଚଳପ୍ରଚଳ ହେଉଥିଲେ । ରେଳରେ ଆସୁଥିଲେ ଝିଅ ଜ୍ୱାଇଁଙ୍କୁ ଦେଖିବା ପାଇଁ । ଘର ପାଖରେ ହୋଇଗଲାଣି । ସାଙ୍ଗରେ ସ୍ୱାମୀ ଆଉ ସାନପୁଅ । ଦିହିଙ୍କି ବସେଇ ବାଥରୁମ୍‌ରୁ ଆସିବା ପାଇଁ ଉଠିଲେ । ବାଥରୁମରୁ ଆସିବା ବାଟରେ ବାହାର କବାଟ ମୁକୁଳା । ଯାତ୍ରୀ ଓହ୍ଲେଇ ଯାଉଛନ୍ତି । କବାଟ ବନ୍ଦ ହୋଇନାହିଁ । ଗାଡ଼ି ଲାଇନ ବଦଳେଇଲା । ସେଇ ହଲଚଲରେ ବୁଢ଼ି ବାହାରକୁ ଛାଟିହୋଇ ପଡ଼ିଲେ । ଚକତଳକୁ କେମିତି ଯେ ଟାଣିହେଲେ ବୁଝିବା କଠିଣ । ବେକ ଅଧା କଟିଗଲା । ସେଇଠି ସାଙ୍ଗେ ସାଙ୍ଗେ ମରଣ ।

ଏଇ କଥାରୁ ପଡ଼ିଲା ମିଶ୍ରବାବୁଙ୍କ ପୁଅ କଥା । ଏକୋଇଶ ବର୍ଷର ପୁଅ । ଗୋଆକୁ ବନ୍ଧୁମାନଙ୍କ ସାଙ୍ଗରେ ମଜା କରିବାକୁ ଯାଇଥିଲା । ଗୋଆ ସମୁଦ୍ରରେ ଗାଧୋଇଲା ବେଳେ ହଠାତ୍ ଭିତରକୁ ଟାଣି ହୋଇଗଲା । ତା ସାଙ୍ଗରେ ଆଉ ଗୋଟିଏ ପିଲା ଥିଲା । କେତେକ ବିଦେଶୀ ଲୋକେ ସାଙ୍ଗ ପିଲାକୁ ଟାଣି ବାହାର କଲେ । ହେଲେ ମିଶ୍ରଙ୍କ ପୁଅକୁ ବଞ୍ଚେଇ ହେଲା ନାହିଁ ।

ଏଇ କଥାରୁ ପଡ଼ିଲା ସୁବ୍ରମଣ୍ୟମଙ୍କ ବିଦାୟଭୋଜି କଥା । ସୁବ୍ରମଣ୍ୟମଙ୍କୁ ବିଦାୟ ଦେବାକୁ ବଣଭୋଜି ହେବା ସ୍ଥିର ହେଲା । ସବୁ ବନ୍ଧୁଯାକ ଗଲେ ଗୋଟିଏ ଜଳପ୍ରପାତ

ପାଖକୁ । ଜଳପ୍ରପାତ ହେବା ପୂର୍ବରୁ ଯେଉଁ ପାଣିର ବିସ୍ତାର ତହିଁରେ ପହଁରି ଷାରି ସମସ୍ତେ ବାହାରି ଆସିଲେ । ଦି ଜଣ କହିଲେ, ଖାଇବା ବଡ଼ା ହେବା ଆଗରୁ ଆମେ ଆଉ ପରସ୍ତେ ପହଁରି ଆସୁ । ସେଇ ଦିଜଣରୁ ଜଣେ ଫେରିଲେ ନାହିଁ । ପରଦିନ ତାଙ୍କ ଶବକୁ ଜଳପ୍ରପାତ ତଳୁ ବାହାର କରାହେଲା ।

ଏଇ କଥାରୁ ପଡ଼ିଲା ପଟ୍ଟନାୟକଙ୍କ ପୁଅ କଥା । ଆମେରିକା ଯାଇଥିଲା ତେଇଶ ବର୍ଷର ଭେଣ୍ଡା । ସେଇଠି ବାହାଘର ହେବା ସ୍ଥିର ହେଲା । ବାହାଘରର ପାଞ୍ଚଦିନ ଆଗରୁ ଦିନେ ମଟରେ ସାଇକେଲ ନେଇ ଗଲାବେଳେ ହେଲା ଯେ ଧକ୍କା ଭାଗ୍ୟକୁ ବଞ୍ଚିଗଲା । କିନ୍ତୁ ସେ ବଞ୍ଚିବା ବଞ୍ଚିବା ନୁହେଁ । ଅଚଳ ହାତଗୋଡ଼କୁ ସଚଳ କରିବା ପାଇଁ ଆମେରିକା ବୋଲି ନାନା ଯନ୍ତ୍ରପାତି ତିଆରି ହେଲା । ହେଲେ ତା ଭବିଷ୍ୟତ କଣ ହେବ ବିଚାରନ୍ତୁ । ସବୁଠାରୁ ଦୁଃଖର କଥା ଯେ ପୁଅର ମଟରେ ସାଇକେଲ ଚଳେଇବାକୁ ଡ଼ରି ବାପା ମା ତା ପାଇଁ ଗାଡ଼ି କିଣି ଦେଇଥିଲେ । ସେଦିନ ସେ ତା ସାଙ୍ଗକୁ ଗାଡ଼ି ଦେଇ ବଦଳରେ ତା ସାଙ୍ଗର ମଟରେ ସାଇକେଲରେ ଯାଉଥିଲା । ଧକ୍କା ହେଲା ।

ଏଇ ମାହାନ୍ତିଙ୍କ ଝିଅ କଥା ଦେଖନ୍ତୁ । ବାହାଘର ଦି ଦିନ ଆଗରୁ ସଉଦାପତ୍ର କରିବାକୁ ଗାଡ଼ିନେଇ ପୁରା ପରିବାର କଟକ ବାହାରିଲେ । ବାଟରେ ଗାଡ଼ି ନେଉଟିଲା । ପରିବାରର ସମସ୍ତେ ଅକ୍ଷତ । କିନ୍ତୁ ଝିଅର ଛାତିଠାରୁ ପାଦ ପର୍ଯ୍ୟନ୍ତ ଅଚଳ । ଝିଅ କାନ୍ଦୁଚି । ଆଉ କଣ ବାହାଘର ହେବ ?

ମହାପାତ୍ରଙ୍କ ୨୬ ବର୍ଷର ସାନଭାଇ । ହୃଦରୋଗରେ ପ୍ରାଣ ଗଲା । ଖାଇ ପିଇ ଶୋଇଲା । ସକାଳକୁ ଡାକିଲାବେଳକୁ ସୋର ଶବ୍ଦ ନାହିଁ ।

କଥାରେ ଅଛି ଯାହାର ସାପରେ ଯିବା କଥା ସିଏ ବାଘରେ ଯିବନାହିଁ । ଯାହାର ବାଘରେ ଯିବାକଥା ସିଏ ସାପରେ ଯିବନାହିଁ ।

ପୁଣି କଥାରେ ଅଛି ମଣିଷର କେତେ ଦଶା । ଆଜି ହାତୀ କାଲି ମଶା । ହାତୀ ହବାପାଇଁ ସମସ୍ତଙ୍କ ମନ ହାଇଁପାଇଁ । କିନ୍ତୁ ମଶା ହେବା ପାଇଁ ମାନସିକ ପ୍ରସ୍ତୁତି କାହାରି ନାହିଁ । ସେଇଥିପାଇଁ ଭାଗ୍ୟ ଉପରେ ସବୁ ଛାଡ଼ିଦେଇ ଆମେ ନିଶ୍ଚିନ୍ତ । ଭାଗ୍ୟଂ ଫଳତି ସର୍ବତ୍ରଂ ନ ବିଦ୍ୟା ନ ଚ ପୌରୁଷମ୍ । ଏଇ ଶାସ୍ତ୍ର ବାକ୍ୟ ଆଉ 'କପାଳ ଲିଖନ, କେ କରିବ ଆନ' କହି ଭବିଷ୍ୟତକୁ ମାନି ନେବାର ଯେଉଁ ମାନସିକତା ତାହାହିଁ ଆମ ସଂସ୍କୃତିର ପରିପ୍ରକାଶ ବୋଲି କୁହାଯାଉଛି । କିନ୍ତୁ ଆଉ ମଧ ଭାଲପଟ ଲିଖିତଂ କର୍ମାନୁସାରଂ ଫଳମ୍ ମଧ ଏଇ ସଂସ୍କୃତିର ପ୍ରକାଶ । କପାଳରେ ଯାହା ଲେଖା ହୋଇଥିଲେ ବି କର୍ମ ଅନୁସାରେ ଫଳପ୍ରାପ୍ତି । ତେଣୁ ଆପଣା କର୍ମ ଠିକ୍ ଭାବରେ କରିଥିଲେ ଏଇ ଦୁର୍ଘଟଣା ଘଟି ନ ଥାନ୍ତା ପରା । ମରଣକୁ ଏଡ଼େଇ ଦେବା ହୁଏତ ସମ୍ଭବ ହୁଅନ୍ତା ନାହିଁ, ଭାଗ୍ୟକୁ ଏଡ଼େଇ ଦେବା ହୁଏତ ସମ୍ଭବ ହୋଇଥାନ୍ତା ।



# ଡ଼ର

ଟୁନି କହିଲା ମତେ ଡ଼ରମାଡୁଛି । ତମେ ରହୁନ, ପିଲାଏ ଯିଏ ଯୁଆଡ଼େ ଗଲେ । ଏଠି ପଡ଼ିଆ ମଝିରେ ଏକୁଟିଆଟା ମତେ ଡ଼ରମାଡୁଛି । ଶେଷ ପଦକ ମୋର ସହର ବାହାରେ ବଗିଚାଘର କରିବାକୁ ଘରଣୀଙ୍କର ଭଲୁଗୁଣା । ମୁଁ କହିଲି, ଟୁନି, ତମେ ଯେତେବେଳେ କଟକର ଲୋକଗହଳ ସାଇରେ ତମର ପ୍ରଥମ ବାଇଶି ବର୍ଷ କଟେଇଲ, ସେତେବେଳେ କେବେ ଡ଼ରିନ ? ଟୁନି କହିଲା ସେ ଡ଼ର ଏ ଡ଼ର ଅଲଗା । ପିଲାବେଳେ ଡ଼ର ମାଡ଼ିଲେ ବୋଉ କି ବାପା କୋଳକୁ ନେଉଥିଲେ । ସ୍କୁଲ କଲେଜରେ ଯେ ବଜାରୀ ପିଲାଙ୍କୁ ଡ଼ର ନ ଥିଲା ନୁହେଁ । ତେବେ ସେମାନଙ୍କର ଖୋକାକୁ ଡ଼ର ଥିଲା । ଖୋକା ଟୁନି ଦେଉଙ୍କ ଭାଇ ।

ମୁଁ ସେତେବେଳକୁ ଅନେକ ଦୂରକୁ ଚାଲି ଯାଇଥିଲି । ଡ଼ର ହିଁ ମଣିଷର ଚିର ଜୀବନର ସାଙ୍ଗ । ଜନ୍ମ ହେଲା ଦିନୁ ଡ଼ର ଶିକ୍ଷା ଆରମ୍ଭ । କାଳେ କାହାର ଆଖି ପଡ଼ିଯିବ ସେଇ ଡ଼ରରେ କଳା ନେସା ହେଲା । କାଳେ ଯମ ନେଇଯିବ ସେଇ ଡ଼ରରେ ନାଁ ଦିଆ ହେଲା ନିମ କି ନକଡ଼ି । ଟିକିଏ ବଡ଼ ହେଲେ ଖବରଦାର ଏକୁଟିଆ କୁଆଡ଼େ ଯିବୁନି, ଅନ୍ଧାରରେ ଭୂତ ପ୍ରେତ ଡାହାଣୀ ଚିରୁଗୁଣୀ ଅଛନ୍ତି । ଆଉ ଟିକିଏ ବଡ଼ ହେଲେ ବୟସର ଡ଼ର । କାହାର ମୂର୍ଖତାକୁ ଡର, କାହାର ବା ପଣ୍ଡିତପଣିଆକୁ ଡ଼ର । କାହାର ଗରିବପଣକୁ ଡର, କାହାର ବଡ଼ଲୋକିକି ଡର । କାହାର ଯୁକ୍ତପରିବାରକୁ ଡର, କାହାର ବା ଏକୁଟିଆପଣକୁ ଡର । ଟୁନି ମତେ ହଲେଇ ଦେଇ କହିଲା, କଣ ଏତେ ଭାବୁଚ ? ଘର ଜଗିବାର ଗୋଟାଏ କିଛି ବ୍ୟବସ୍ଥା କର ।

କି ବ୍ୟବସ୍ଥା କରିବି ? ସେଦିନ ଦଶହରା ଭିଡ଼ରେ ରାଜପୁରୋହିତର ଚାରିବର୍ଷର ପିଲାଟାକୁ କିଏ ଉଠେଇ ନେଇଗଲା । ବାଡ଼ାଲୋରରେ ମାଛି ସଞ୍ଜବେଳେ ଶହ ଶହ ଲୋକଙ୍କ ମଝିରେ ଗୌରୀଦେବୀଙ୍କ ବେକରୁ କିଏ ମୋଟା ସୁନାହାର ଝିଙ୍କିନେଲା । ଦିଲ୍ଲୀ, ପଞ୍ଜାବରେ ଦିନ ଦିପହରେ ବ୍ୟାଙ୍କ ଲୁଟି ହେଉଛି । ସବୁ ସହରରେ ଘର ଭାଙ୍ଗି ପ୍ରତିଦିନ କୋଉଠି ସ୍ତ୍ରୀ ଲୋକଙ୍କ ବେଇଜତି ହେଉଛି ତ କୋଉଠି ଚୋରି ଡକେଇତି ହେଉଛି । ପୁଣି କୋଉଠି କୋଉଠି ଅଣ୍ଟିରୁରୀ ଚଣ୍ଡି କାଟିଲା ପରି ଘର ଜଗାଳୀ ସାହସରେ ଏ ସବୁ ହେଉଛି । ଟୁନି ରାଗିଯାଇ କହିଲା ତମ ସାଙ୍ଗରେ ତର୍କରେ କଣ ପାରିହେବ ? ତମେ ତ ତମର ବୁଲୁଚ । ଆଉ ମୁଁ ଏଠି ଡ଼ରରେ ରାତିରେ ଶୋଇ ପାରୁନି ।

ପୁଣି ମୁଁ ହଜିଗଲି । ସତରେ ତ ଆଜି ସମସ୍ତଙ୍କ ମନରେ ଡ଼ର । ଥିଲାବାଲାର ଡ଼ର, କିଏ କେତେବେଳେ କଣ ନେଇଯିବ । ନଥିଲାବାଲାର ଡ଼ର, ଚଳିବ କେମିତି ? ଏଇଥିପାଇଁ ଦିହେଁ ବି ବେପରୁଆ । ଥିଲାବାଲା ଅପଣା ଅଧିକାର ରଖିବା ପାଇଁ ସବୁକିଛି କରିବାକୁ ରାଜି । ନଥିଲାବାଲା ଆପଣା ଦାବୀ ପାଇଁ ସବୁକିଛି କରିବାକୁ ତିଆରି । ଏଇଥିପାଇଁ

ସାଧାରଣ ଜୀବନ ଆଜି ବିପନ୍ନ । ଆଉ ସାଧାରଣ ଜୀବନରେ ସାଧାରଣ ବା ରହିଲା କଣ ? ପାଠୁଆ ଲୋକେ ପଶ୍ଚିମରୁ କି ବୁଦ୍ଧି ଶିଖିଲେ କେଜାଣି, ସମାଜ ବୋଲି କିଛି ରହିଲା ନାହିଁ । ଅନାଥାଶ୍ରମ ଆଉ ବୁଢ଼ାବୁଢ଼ିଙ୍କ ଘର ବଢ଼ିଲା । ପରିବାର ଭାଙ୍ଗିଲା । ସମିଏଁ ଅପର ହୋଇଗଲେ । କାହାରି କାହାରି ଉପରେ ଭରସା ନାହିଁ ।

ପିଲାଦିନେ ଗାଁରେ ବୁଢ଼ାବୁଢ଼ୀମାନେ କହୁଥିଲେ ଡର କାହାକୁ, ଭୟ କାହାକୁ । ଠାକୁର ଅଛନ୍ତି ଚଳେଇବାହାକୁ । ଆଜି ଠାକୁରଙ୍କଠି ହୁଏତ ବିଶ୍ୱାସ ନାହିଁ, ନୋହିଲେ ତାଙ୍କ ଥିବା ନ ଥିବା ବିଷୟରେ ସଂଶୟ ଅଛି । ମୋ ବୋଉ କହୁଥିଲା ଦୃଢ଼େ ତରନ୍ତି, ମୂଢ଼େ ତରନ୍ତି; ମଝିମଝିଆ ବୁଡ଼ି ମରନ୍ତି । ଆଜି ଆମ ଚରିତ୍ର କି ବିଶ୍ୱାସ କୋଉଥିରେ ଦୃଢ଼ତା ନାହିଁ । ସବୁକୁ ଅବିଶ୍ୱାସ କଲାପରି ମୂଢ଼ତା ବି ଆମର ନାହିଁ । ଆଜି ଆମେ ସମସ୍ତେ ମଝିମଝିଆ । ସଂଶୟ ଓ ଅଣବିଶ୍ୱାସ ସମୁଦ୍ରରେ ହାବୁଡୁବୁ ଖାଉଚୁ ।

ଗାନ୍ଧୀବୁଢ଼ା ଦେଶଟାକୁ ନିଡ଼ର ହେବାକୁ ଶିଖେଇଥିଲା । ଦେଶ ସ୍ୱାଧୀନ ହେଲା । ସ୍ୱାଧୀନ ଦେଶର ବଡ଼ ଲାଭ ଡର । ପୁଲିସକି ଡର, ହାକିମଙ୍କୁ ଡର, ଚୋରୀନାରୀ କି ଡ଼ର, ଘର ଭାଙ୍ଗିବା ଆଉ ଦେଶ ଭାଙ୍ଗିବାକୁ ଡର । ମୋଟ ଉପରେ ଜୀବନକୁ ଡର । ପାଠୁଆ ଲୋକଙ୍କର କାମ କରିବାକୁ ଡର, କାମ ନ କରିବାକୁ ଡର । ତେଣୁ କାମ ନ କରି ବା ଅଳ୍ପ କାମ କରି ଅଳ୍ପ ସମୟରେ ବଡ଼ଲୋକ ହବା, ରାତିକେ ହାତିଏ ଆଣିବା ସ୍ୱପ୍ନରେ ସେମାନେ ମସଗୁଲ । ଏଇଟ ଆମ ଡରର କାରଣ । କିଏ ଟଙ୍କା ସୁନା ନେଇଯିବ ନୁହେଁ, କାହିଁକି ନା ଏସବୁ ମୋର ଜନ୍ମଶତ୍ରୁ । କିନ୍ତୁ କ୍ଷମତା ନ ଥାଇ ଜୀବନରୁ ବହୁତ ଆଶା କରୁଥିବା ଲୋକଙ୍କର ଅହେତୁକ ଆଚରଣର ଡ଼ର । ମୂଲ୍ୟବର୍ଜିତ ଜୀବନର ଅଯୌକ୍ତିକ ଆଚରଣକୁ ଡର । କୋଉ ଜଗୁଆଳୀ ଏ ଡରରୁ ମୁକ୍ତି ଦେଇ ପାରିବ ?

ତୁନି ହସୁଥିଲା । ତମେ ନିଶ୍ଚୟ ଡରି ଯାଇଚ । ସତରେ କଣ ଏ ବୁଢ଼ାଦିନେ ମତେ ଡର ଲାଗୁଚି । ତେବେ ଏଇ ଏକୁଟିଆ ପଣ ଯାହା । କେମିତି ତୁନିକି ବୁଝେଇବି ଯେ ଏକୁଟିଆ ପଣକୁ ସ୍ୱୀକାର କରିବା ହିଁ ଜୀବନର ସାଧନା । କୈବଲ୍ୟ ବା କେବଳ ଭାବରେ ହିଁ ଜୀବନର ମୁକ୍ତି । ପାଣିରେ ପଶି ମୁଣ୍ଡ ଓଦା ନ କରିବା ସାଧନା ହିଁ ବାଉଳ ସାଧନା । ଭିଡ଼ରେ ଥାଇ ଭିଡ଼ ବାହାରେ ରହିବା ହିଁ ସାମାଜିକତା । ଆଉ ଆପଣାକୁ ଚିହ୍ନି ଆପଣା ସାର୍ଥକତା ଛାଡ଼ିବା ହିଁ ଆମ ସଂସ୍କୃତି । ଏଇଥିପାଇଁ ତ ଭୀମଭୋଇ କହି ପାରିଥିଲେ, ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।



# ଚାଲ

ପୂର୍ବ ପୂର୍ବମାନେ କହି ଯାଇଛନ୍ତି, ଚାଲ । ଚ଼ରୈବେତି, ଚ଼ରୈବେତି । ଚାଲିବାରେ ମହୁ ଝରେ । କୋଉଠି ନାଖିଗଲେ ଷିଉଳି ଲାଗିଯାଏ ।

ଚାଲିବାରେ ସେତିକି ମହକ ଅଛି ବୋଲି ଗାନ୍ଧୀ ଆଉ ବିନୋବା ଚାଲୁଥିଲେ । କଲେଜରେ ପଢ଼ିଲାବେଳେ ଥରେ ରେଭେନ୍‌ସା କଲେଜ ଛକରୁ ଖ୍ରୀଷ୍ଟିଆନ କଲେଜ ଆଉଥରେ କଲେଜ ଛକରୁ ଓଡ଼ିଆ ବଜାର, ଏମିତି ଦିନରେ ଦଶ ବାର ମାଇଲ ଚାଲୁଥିଲେ ବି ବିନୋବାଙ୍କ ସାଂଗରେ ତାଳରଖି ଛଅ ମାଇଲ ଚାଲିବାରେ ମୋର ଦମ୍ ଫାଟିଗଲା । ଇଏତ ମୋର ଯୁବାବେଳର କଥା । ଆଜି ଏ ସବୁ ଭାବି ବସିଲେ କୃଷ୍ଣ ବେହେରାଙ୍କ ହାଇକୁ 'ଫୁଲ । ଚାଲ ।' ମନକୁ ଆସେ । ଖାଲି ବସି ବସି ଚାଲିବାର ମହୁ ଆଉ ମହକ ମନେ କରିବା କଥା ।

ହସ ମାଡ଼ିଲା । ରାସ୍ତା କଡ଼ରେ ବିଜ୍ଞାପନ 'ବାମକୁ ମାଡ଼ି ଚାଲ' । ଏଇଟା Keep to the leftର ଓଡ଼ିଆ ଅନୁବାଦ । ଆଜି କମ୍ପ୍ୟୁଟର ଅନୁବାଦରେ out of sight out of mind ର ଅନୁବାଦ ଅନ୍ଧ ପାଗଲା ହେଲେ ବି ଏଥିରେ ଆଗକୁ ଚାଲିବାର ଆନନ୍ଦରେ ସ୍ୱପ୍ନ ଦେଖୁଥିବା ଲୋକେ ଯେ ବିହ୍ୱଳ ହେବେ ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ?

ତିରୁପତି ଦେଉଳର ସର୍ବ ଦର୍ଶନ ଭିଡ଼ । କାମାକ୍ଷା ମନ୍ଦିରର ବ୍ରହ୍ମୋତ୍ସବର ଭିଡ଼ । ପଛରୁ ଡାକ ଶୁଭୁଛି ଚାଲ, ଚାଲ । ଦରକାର ହେଲେ ପେଲିଚାଲ । ସମୟ ଗଡ଼ି ଯାଉଛି । ଦର୍ଶନ ସାରି ଗଲେ ବଜାର ସଉଦା କରିବାକୁ ହେବ । ସୁଧ ଆଦାୟ କରିବାକୁ ହେବ ।

ଚାଲିବାର ପୁଣି ନାନା ଫେର ଅଛି । ଘୋଡ଼ା ପରି ଚାଲୁଥିବା ଝିଅ ଘୋଡ଼ି ଚାଲିରେ ଚାଲିଲେ, ହାତୀପରି ଚାଲୁଥିବା ଝିଅ ଗଜଗମନା । ସୁନ୍ଦର ଚାଲି ହଂସଗତି ହେଲେ ଧୀର ଚାଲି କଚ୍ଛପ ଗତି । ତେବେ ବି ଚାଲ । ନିରନ୍ତର ଚାଲିବା ହେତୁ ସିନା କଇଁଛ ଠେକୁଆକୁ ଜିତିଗଲା ।

ପୁରୀ ପଣ୍ଡା ଟୋକାଏ ଭାଙ୍ଗ ଉପରେ ଟାଟିଏ ରାବିଡ଼ି ପକେଇ ଦେଇ ଜହ୍ନ ରାତିରେ ମନ ଫୁଲାଣିଆ ଗୀତ ଗାଇ ଆସୁଛନ୍ତି, 'ଦେଖ ଗୋ ରାଧା ମାଧେବ ଚାଲି ।' ଇଏ ସେଇ 'ଚଳ ସଖି କୁଞ୍ଜମ୍'ର ଚାଲି, ଯେଉଠି ପ୍ରୀତି, ଭୟ, ଲାଜ ମିଶାମିଶି । ଇଏ କଳ୍ପନା । ଆଖି ଖୋଲିଲେ ସକାଳ ସଞ୍ଜେ ମେଦ ବହୁଳ ବୟସ୍କ ବୟସକୁ ଜାବୁଡ଼ି ଧରିବା ପାଇଁ ଆକୁଳ ଲୋକଙ୍କର ଜଗିଙ୍ଗ୍ ।

କିଓ, ଇଏ ପୁଣି କଣ ? ପଶ୍ଚିମୀ ଦେଶରୁ ଫେସନ୍ ଆମଦାନୀ ହବ ପରା । ନାଇଁ, ନାଇଁ ଇଏ ହେଉଚ଼ି କରିବା କାମ ଛାଡ଼ି, ନ କରିବା କାମ କରି, ମେଦ ବଢ଼େଇ ସେଇ ମେଦ ତରଳେଇବା ପାଇଁ ସାଧନା । ଏଇ ସାଧନାରେ ପରିଶ୍ରମ ଉପର ସମାଜର ବଢ଼ୁଛି

ସାଂଗରେ ମିଶାମିଶି ।

ସେ ଦିନ ବନ୍ଧୁମେଳରେ ଆଲୋଚନା ହେଉଥିଲା । ଆଜିକାଲି NRI ହେଲେ ଭାରତରେ ବେଶୀ ସୁଯୋଗ । NRI ହେଲା Non Resident Indian. ଜଣେ ବନ୍ଧୁ କହିଲେ RI ହେଲେ Rigorous Imprisonment । ଆପଣା ଘରେ ଆପେ ବନ୍ଦୀ । ତମେ ଏଇଠି ଖଟିଖାଟି ଆପଣା ଯୋଗ୍ୟତାରେ ଉପରକୁ ଉଠିଲ । ଯିଏ ଏଇସବୁ ଝାମେଲାରେ ନ ପଶି ଚଟପଟ ଜୀବନ ସୁଆଦ ପାଇଁ ବିଦେଶ ଗଲେ, ସିଏ ତମ ପାହିଆରେ ଫେରି ଆସିଲେ ବି ତାଙ୍କୁ ଯେଉଁ ସୁବିଧା ମିଳିବ ତମକୁ ତା ମିଳିବ ନାଇଁ । ଆଲୋଚନାରେ ଭାଗ ନେଉଥିବା ଆଉଜଣେ ବନ୍ଧୁଙ୍କ ଦିହରେ ଚେଙ୍ଗା ଲାଗିଲା ପରି ସେ ଚିହିଙ୍କି ଉଠିଲେ । ସତରେ ତ । ରମେଶ ମୋ ପାହିଆରେ ବିଦେଶରୁ ଆସିଲେ, ତାଙ୍କୁ ଘରଭଡ଼ା କରି ସରକାର ଦେଲେ । ସିଏ ଭଡ଼ା ଦେଉଛି ତିନିଶହ । ମୁଁ ପନ୍ଦରଶହ । ଜୀବନର ଗତିରେ କିଏ ଆଗେଇଚି ?

ବନ୍ଧୁ ବଂଶୀ କହିଲେ, ତମେ NRIଙ୍କୁ ଏଠି ଗାଳି ଦେଉଚ, ସେ ଦେଶରେ ସିଏ ଅବିଶ୍ୱାସର ପାତ୍ର ହେଉଛନ୍ତି । ଯେଉଁମାନେ ବିଦେଶ ଯାଉଛନ୍ତି, ସେଠି ସେମାନେ ବଞ୍ଚିବା ପାଇଁ ଯାଉ ନାହାନ୍ତି । ବିଦେଶ ଯିବା ଏକ ପ୍ରକାର ମାନସିକ । ପଇସା କମେଇବାକୁ ହେବ । ନ ଖାଇ, ନ ପିଇ ତାଙ୍କ ସଂସ୍କୃତିରୁ ନିଜକୁ ବଞ୍ଚିତ କରି ପାହି ପାହି କରି ସଞ୍ଚି ସେଇ ପଇସାର ଗାଦି ଅନୁଭବ କରିବା ହେଉଚି ଏଇ ମାନସିକତା ବା ସାଧନା । ତାଙ୍କୁ ଯଦି ଆମେ ସେଠି ରହି ଭଲ ନାଗରୀକ ହେବାରେ ସାହାଯ୍ୟ କରନ୍ତେ, ତେବେ ଉଭୟଙ୍କର ମଙ୍ଗଳ ହୁଅନ୍ତା । କିନ୍ତୁ ବିକାଶ ନାଁରେ ଆମେ ଏଇ ଯୋଉ ଜଗିଙ୍ଗ ଆରମ୍ଭ କରିଛୁ ସେଥିରେ ଉପର ମହଲ ଜୀବନଧାରାରେ ଆମର ଆଖି ।

ଦେଶରୁ ଚାଲି ଚାଲି ବିଦେଶରେ ପହଞ୍ଚିଲେଣି । ଆଜିକାଲି ଘଣ୍ଟାରେ ଅଠର ହଜାର ମାଇଲ ଯିବା ସମ୍ଭବ ହେଲାଣି । ଆପଣ କଣ ଚାଲିରେ ଅଛନ୍ତି ? ଆଜ୍ଞା ହଁ । ଅଠର ହଜାର ମାଇଲ ଗତିରେ ହୁଏତ ଚନ୍ଦ୍ରମା କିମ୍ବା ଶୁକ୍ରକୁ ଯାଇହେବ, ପଡ଼ିଶା ଘରକୁ ନୁହଁ, ପାଖସାଇକୁ ବି ନୁହଁ । ସେଇଥି ପାଇଁ ଆମେ ଆଜି ଆପଣା ଆପଣା ପାଖରେ ଅଜଣା ।

ଗାଁରେ ଚାଲିବାର ମାପ ଭିନ୍ନପ୍ରକାର । ମୋ ପିଲାଦିନେ ଡାଳଙ୍ଗା କୋଶରେ ଚାଲିବା ମପା ଯାଉଥିଲା । ଘରୁ ବାହାରିଲ ତ ଖଣ୍ଡେ ଡାଳ ଭାଂଗି ଧରି ଚାଲ । ଯୋଉଠି ତା ଝାଉଁଳିଲା, ସେଇଠି କୋଶେ । ଆଜି ଆର.କେ. ନାରାୟଣ ଆପଣା ଅଣ୍ଟାରେ ଗାନ୍ଧୀ ଘଣ୍ଟାପରି ଘଣ୍ଟାଟିଏ ଝୁଲେଇ ଚାଲନ୍ତି । ଦିହର ମାଂସପେଶୀ ଚଳନରୁ ସେଥିରେ ଚାଲିର ଦୂରତା ମାପି ହୁଏ । ଦିନକୁ ଦି ମାଇଲ ତାଙ୍କର ମପା ଚାଲି ।

ସହରରୁ ଜଣେ ବାବୁ ଗାଁ ଆଡ଼କୁ ଆସୁଥାନ୍ତି । ବାଟରେ ଟିକିଏ ଧୋବଧୋବଳିଆ ଜଣେ ଗାଉଁଲୀଲୋକକୁ ପଚାରିଲେ ସେ ଗାଁରେ ପହଞ୍ଚିବାକୁ କେତେ ବେଳ ଲାଗିବ ? ଲୋକଟି ଉତ୍ତର ନ ଦେବାରୁ ସହରୀ ବାବୁ ଗାଁ ଲୋକଙ୍କ ଉପରେ ଗରଗର ହୋଇ ଚାଲିବାରେ

ଲାଗିଲେ । ଖଣ୍ଡେ ବାଟ ଗଲାପରେ ପଛରୁ ଡାକ ଶୁଭିଲା, ଶୁଣନ୍ତୁ । ଭଦ୍ରଲୋକ ଫେରିଲେ । ଗାଉଁଲି ଲୋକଟି କହିଲା ଆପଣଙ୍କୁ ଅଧଘଣ୍ଟାଏ ଲାଗିବ । 'ଏଇକଥା କହିବାକୁ ମତେ ଦଶ ମିନିଟ ଚଲେଇଲ ? - ଆଜ୍ଞା, ଗାଁ କେତେ ଦୂର ମୁଁ ଜାଣେ । ଆପଣ କେତେ ଜୋରରେ ଚାଲନ୍ତି ତା ମାପିଲେ ଯାଇ ସିନା ସମୟର କଳନା କରିବି । ଦିହେଁ ଲାଜରା ହେଲେ । ଯେଝା ବାଟରେ ଗଲେ ।

ମୋ ପିଲାଦିନେ ଦେଖିଚି ସାନ ପିଲାଙ୍କୁ ଚଲେଇ ଶିଖେଇଲା ବେଳେ ମା ବୁଢ଼ୀମାମାନେ କହୁଥିଲେ 'ଚାଲି ଚାଲି, ନଈ ବାଲି ।' ଜୀବନର ଅସରନ୍ତି ଚାଲିକୁ ଲକ୍ଷ କରି ଯେ ଏମିତି କୁହାଯାଉଥିଲା, ଏଇନେ ସେ କଥା ବୁଝୁଚି । କିନ୍ତୁ ଏଇ ଚାଲି ଲକ୍ଷହୀନ ଚାଲି ନୁହେଁ । ଗତିର ଲକ୍ଷ ଭୁଲିଗଲେ ମଣିଷ ବାଟବଣା ହୁଏ । ପଡ଼ିଆରେ ଭୁଆଁ ବୁଲିଲା ପରି ଚାଲିବା ସାର୍ । ଇଏ କୋଉଠି ନ ପହଞ୍ଚିବାର ଚାଲି । ଆଜି ଯିଏ ଭଲ ଜୀବନ ସ୍ୱପ୍ନରେ ଦେଶ ଛାଡ଼ି ବେଘର ହେଉଛନ୍ତି, ଆଉ ଯିଏ ଭଲ ଜୀବନ ପଛରେ ଗୋଡ଼େଇ ଗୋଡ଼େଇ ଅଜଣା ଅମୁହାଁ ବାଟରେ ଚାଲିଛନ୍ତି, ଚାଲି ଚାଲି ଉଭୟେ ଥକା । ଜୀବନ କେତେବେଳେ ଆପଣା ଆଂଗୁଠି ଫାଙ୍କରେ ବୋହି ଗଲାଣି, ଜଣା ନାହିଁ ।

ଚାଲ ଆମେ ବି ଚାଲିବା । ଫୁଲ ଦେଖିବା । ବାଟ କଡ଼ର ଫଳ ଚାଖିବା । ମହୁ ଝରେଇବା । କିନ୍ତୁ ଏ ସବୁ ଆଗରୁ ଲକ୍ଷ ସ୍ଥିର କରିବା ଦରକାର । ଗିରି ଶିଖେ ଲୟ ରଖି ଚାଲିବି ମୂକର । ଗିରି କେତେ ଦୂର ହେଉ ପଛକେ । ତା ନାଁ ପଛକେ ଅଜଣା ହେଉ । ସେଇ ମୋର ଚାଲିର ଲକ୍ଷ ।



# ବହୁ ବିବାହ

ପଣ୍ଡିତ ନୀଳକଣ୍ଠ କହୁଥିଲେ ପୁରୁଷ ବୀଜବିକ୍ଷେପି । ତେଣୁ ଗୋଟିଏ ସ୍ତ୍ରୀରେ ସନ୍ତୋଷ ହେବା ପୁରୁଷ କଦବା କ୍ୱଚିତ୍ ଦେଖିବାକୁ ମିଳେ । ସମାଜର ଚଳଣୀରେ ବାରଣ ହେବା ହେତୁ ହୁଏତ ଏକାଧିକ ସ୍ତ୍ରୀ ଗ୍ରହଣ କରିବା ସମ୍ଭବ ନ ହୋଇପାରେ । ତେବେ ସୁନ୍ଦରୀ ଝିଅଟିଏ ଚାଲି ଯାଉଥିଲେ ଟିକିଏ କଣେଇ ଚାହିଁବାର ଲୋଭ କେତେ ଜଣ ପୁରୁଷ ସମ୍ଭାଳି ପାରିବେ ? ମୋର ବାନ୍ଧବୀ ମିସେସ୍ କେତକାରଙ୍କ ଭାଷାରେ କହିଲେ Woman is old when she looks it, man is old when he stops looking. ଏଇଟା ଯେ ଏକାଆଡ଼ିକା କଥା ନୁହେଁ । ଖେଳା ଲୋଳା ଖଞ୍ଜନାକ୍ଷୀମାନେ ତେରଛା ଆଖିର ତୀର ମାରି କେତେ ଯେ ପୁରୁଷଙ୍କୁ ଘାଏଲ କରିଛନ୍ତି ତାର ହିସାବ ଲେଖି ବସିଲେ ପୋଥିଏ ହେବ । ପାର୍ବତୀ ରୂପରେ ଶିବଙ୍କୁ ଭୁଲେଇ ନ ପାରିବାରୁ ସିନା ତପସ୍ୟା କଲେ । ମୋହିନୀ ଆପଣା ତେରଛା ନଜରରେ

ଦେବତା ରାକ୍ଷସ ସମସ୍ତଙ୍କୁ ଅଣାୟତ୍ତ କରି ଦେଇଥିଲେ । ଆଉ ଅପ୍ସରାମାନେ ? ଋଷିମୁନିଙ୍କ ତପ ଭାଙ୍ଗିବା ପାଇଁ ଆପଣା ଛଇ ଛଟକର ବ୍ୟବହାର କରିବା ଜଣାଶୁଣା । ଆଉ ଗାଁର କୋଉ ନିରୀହ ପିଲା କଟକର କୋଉ ଛଟକୀ ଝିଅର ପାଲରେ ପଡ଼ିଗଲା, କୋଉ ଭାରତୀୟ କୋଉ ବିଦେଶିନୀର ଜାଲରେ ପଡ଼ିଗଲା ଆଉ କିଏ ବା କାହାର ଆଖିବନ୍ଧଣୀରେ ଲାଖିଗଲା ପରି ଗାଳ୍ପଗପର ପ୍ରମାଣ କିଛି କମ୍ ନାହିଁ ।

ପୁରାଣରେ ଅଛି ଶ୍ରୀକୃଷ୍ଣ ଷୋଳସହସ୍ର ଗୋପନାରୀଙ୍କୁ ଧରି ମଞ୍ଚରେ ଲୀଳା ରଚନା କରିଥିଲେ । ସେ ଏଇ ଷୋଳସହସ୍ରଙ୍କୁ ବାହା ହୋଇଥିବାର ପ୍ରମାଣ ନାହିଁ । ଆଜିକାଲି ବାହା ନ ହୋଇ ପୁରୁଷ ସ୍ତ୍ରୀ ଏକାଠି ରହିବାର ଆଦର୍ଶ ସମ୍ଭବତଃ ଶ୍ରୀକୃଷ୍ଣ । ତେବେ ଆଧୁନିକ ମାନେ କାଠିଏ ପଛରେ । ଯେଉଁ ଘରେ ରହୁଥିବା ସ୍ତ୍ରୀମାନଙ୍କୁ ଇଚ୍ଛାନୁସାରେ ଏକାଠି କରି ପାରୁଥିବା ଆଧୁନିକ ପୁରୁଷ ବିରଳ । ଯଦିଓ ଏକାଧିକ ପୁରୁଷଙ୍କ ସାଙ୍ଗରେ ଗୋଟିଏ ସ୍ତ୍ରୀ ଓ ଏକାଧିକ ସ୍ତ୍ରୀଙ୍କ ସାଙ୍ଗରେ ଗୋଟିଏ ପୁରୁଷ ସହବାସର ଉଦାହରଣର ଅଭାବ ନାହିଁ ।

ରାମାୟଣରେ ରାମ ସିନା ଏକପତ୍ନୀ ବ୍ରତର ଉଦାହରଣ । ତେବେ ସୁଗ୍ରୀବ, ବିଭିଷଣ, ରାବଣ ଏବଂ ସେ କାଳର ଆଉ ରାଜାମାନେ ବହୁପତ୍ନୀକ ଥିଲେ । ମହାଭାରତରେ ପାଣ୍ଡବ ପାଞ୍ଚଜଣ ଜଣକର ସ୍ୱାମୀ ଥିଲେ ସୁଦ୍ଧା ପ୍ରତ୍ୟେକଙ୍କର ଏକାଧିକ ସ୍ତ୍ରୀ ଥିଲେ । ଅହଲ୍ୟା, ଦ୍ରୌପଦୀ, ତାରା, କୁନ୍ତୀ, ମନ୍ଦୋଦରୀ ତଥା, ପଞ୍ଚକନ୍ୟା ସ୍ମରେ ନିତ୍ୟଂ ମହାପାତକ ନାଶନଂ । ଆଶ୍ଚର୍ଯ୍ୟ କଥା ହେଉଛି ଯେ, ଆଦର୍ଶ ମନାଯାଉଥିବା ଏଇ ପାଞ୍ଚକନ୍ୟାଙ୍କର ଏକାଧିକ ସ୍ୱାମୀ । କୁନ୍ତୀଙ୍କ ପରି କିଏ ଗୁପ୍ତ ବରଣ କରିଛି ତ କିଏ ମନ୍ଦୋଦରୀଙ୍କ ପରି ସ୍ୱାମୀ ନିଧନ ପରେ ଦିଅରକୁ ଦୁତୀଅ ହୋଇଚି । ବହୁ ବିବାହକୁ ପୁରାଣରେ ନାନା ଭାବରେ ସମର୍ଥନ ଦିଆଯାଇଛି ।

ଇତିହାସରେ କୁଳୀନ ବାହା ଜଣାକଥା । ଜଣେ ଜଣେ କୁଳୀନ ବ୍ରାହ୍ମଣ ଘର ଘର ବୁଲି ଏତେ ବାହା ହେଉଥିଲେ ଯେ, ଆପଣା ସ୍ତ୍ରୀଙ୍କ ସଂଖ୍ୟା ତାଙ୍କୁ ଜଣା ନ ଥିଲା । ଅନ୍ତର୍ଜଳୀଯାତ୍ରା ପରି କରୁଣ କାହାଣୀ ଏଇ ବାହାଘରକୁ କଳୁଷିତ କରି ନ ଥିଲେ ଏଇ ପ୍ରଥା ଆଜି ମଧ ଚ଼ଳୁଥାନ୍ତା ପରା ! କେରଳରେ ନାୟାର ନମ୍ବୁଦ୍ରି ସମ୍ବନ୍ଧ କେବେକାର କଥା ? କୌଣସି ନମ୍ବୁଦ୍ରି ନାୟାର ସ୍ତ୍ରୀ ପାଖକୁ ଯିବା ଗୌରବର କଥା । ଦୁଆରେ ଗଡୁ ରଖିଥିଲେ ସେ ଘରକୁ କାହାର ଯିବା ମନା । ନମ୍ବୁଦ୍ରି ଆପଣା କାମ ସାରି ଗଡୁ ଘେନି ଚାଲିଗଲେ ନାୟାର ଘରଣୀ ଆପଣା ଘରର ଘରଣୀ ।

ଆମ ରାଜାଘର ଅନ୍ତର ଥିଲେ । ରାଜା କୋଉ ପ୍ରଜା ଉପରେ ଅନୁଗ୍ରହ କରି ତାଙ୍କ ଝିଅକୁ ଗ୍ରହଣ କଲେ କିଛିଦିନ ପରେ ତାକୁ ବାହାକରି ଦେଉଥିଲେ । ଏଇ ଅନ୍ତରମାନେ ରାଜ ସମ୍ପର୍କ ଗୌରବରେ ନୀଳାଚଳରୁ ଝିଅକୁ ଆପଣା ଆଦର୍ଶରେ ଗ୍ରହଣ କରି ପ୍ରତ୍ୟନ୍ତର ସୃଷ୍ଟି କଲେ । ରାଜାଙ୍କ ଦେଖାଦେଖି ତାଙ୍କ ଶିଷ୍ଟ ପାର୍ଶ୍ୱଦମାନେ ମଧ ଅନ୍ତର ପ୍ରଥା ଗ୍ରହଣ

କଲେ । ମୋର ଜଣେ ଅତର ବଡ଼ମା ଥିଲେ । ତାଙ୍କ ପିଲାମାନେ ମୋର ଭାଇ ଭଉଣୀ, ଯେମିତି ମୋ ନିଜ ବଡ଼ମାଙ୍କ ପିଲାମାନେ । ଆମ କାଳକୁ ଯେ ଅତର ପ୍ରଥା ଆସି ନାଇଁ, ଏଇଟା ଏକପ୍ରକାର ଆଶୀର୍ବାଦ । ତେବେ ଲୁଚେଇ ଛପେଇ ଯେ ଅନେକେ ଏକାଧିକ ସହବାସ ନ କରୁଛନ୍ତି ନୁହେଁ ।

ଅନେକେ ମତେ ପଚାରନ୍ତି, ତମେ ତିରିଶି ବର୍ଷ ଗୋଟିଏ ସ୍ତ୍ରୀକୁ ବାହାହୋଇ ରହିଚ କେମିତି ? ମୁଁ କହେ ବିଷ୍ଣୁଙ୍କ ଗୋଟିଏ ସ୍ତ୍ରୀ ଲକ୍ଷ୍ମୀ । ହେଲେ ସେଇ ଲକ୍ଷ୍ମୀଙ୍କର କେତେ ନାଁ ! ଲକ୍ଷ୍ମୀ, ପଦ୍ମାଳୟା, ପଦ୍ମା, କମଳା, ଶ୍ରୀ, ହରିପ୍ରିୟା, ଇନ୍ଦିରା, ଲୋକମାତା, ମା, କ୍ଷୀରାବ୍ଧି ତନୟା, ରମା, ଏତେ ନାଁ ପଛରେ ନିଶ୍ଚୟ କିଛି ରହସ୍ୟ ଅଛି । ବିଷ୍ଣୁ ଯେତେବେଳେ ଗୋଟିଏ ନାଁରେ ବୋର ହୋଇ ଯାଉଥିଲେ ବିଭିନ୍ନ ନାଁରେ ଡାକି ଏକରେ ବହୁ ଜନର ସ୍ୱାଦ ପାଉଥିଲେ । ସେମିତି ସୁଲକ୍ଷଣା, ଟୁନି, ହଇଏ, ଶୁଣୁଚି ଆଦି ଡାକ ଭିତରେ ଯେଉଁ ନୂତନତାର ରୂପ ଲୁଚି ରହିଚି ତାହାହିଁ ଏଇ ଏକ ବିବାହକୁ ମଜଭୁତ୍ ରଖିଛି ।



# ଖେଳାଧୂଳା

ଖେଳ ସାଙ୍ଗରେ ଧୂଳିର ସମ୍ବନ୍ଧ ହେତୁ ସମ୍ଭବତଃ ଖେଳାଧୂଳା କଥାଟିର ସୃଷ୍ଟି । ଧୂଳିଧୂସର ନୋହିଲେ ଖେଳ ହେଲା କୋଉଠି ? ଆଜିକାଲିର ଘର ଭିତରେ ଇନଡ଼ୋର ଷ୍ଟାଡ଼ିଅମରେ ଯେଉଁ ଖେଳ ହେଉଚି ସେଥିରୁ ଧୂଳି ନ ଉଡ଼ିଲେ ସୁଦ୍ଧା ଖେଳାଧୂଳା କଥାଟିର ବ୍ୟବହାର ଆମକୁ ଅନ୍ତତଃ ମନେ ପକେଇଦିଏ ଗାଁ ଭୂଇଁ କଥା ।

ଆମ ଗାଁ ପାଖ ପାଞ୍ଚ ଗାଁ ଆମ୍ବତୋଟାରେ ପିଲାଙ୍କୁ ଏକାଠି କରି ଫୁଟବଲ ଖେଳିବା ପାଇଁ ଯେଉଁ ସାଧ ସାଧନା ମୁଁ କରିଥିଲି, ସେତେବେଳେ ଦି ଚାରିଥର ପେଣ୍ଡୁ ଯଦି ମୋ ଗୋଡ଼ରେ ବାଜିଥାନ୍ତା, ତେବେ ଖେଳ ଜଗତରେ ଯେ ଅଭୂତପୂର୍ବ ବିପ୍ଳବ ହୋଇଥାନ୍ତା ଏ ବିଷୟରେ ଆପଣଙ୍କର ସନ୍ଦେହ କରିବାର କାରଣ ନାହିଁ । ପେଣ୍ଡୁ ପଛରେ ଗୋଡ଼େଇ ଗୋଡ଼େଇ ପଡ଼ି ଉଠି ଧୂଳିଧୂସର ହୋଇ ଥରେ ପେଣ୍ଡୁ ହାତକୁ ଆସିବାରୁ ହାଣବଲ, ଆଉଥରେ ଗୋଡ଼ରେ ଲାଗୁ ନ ଲାଗୁଣୁ ଅଫସାଇଡ଼ ନ ହୋଇଥିଲେ ମୁଁ ଯେ ଫୁଟବଲ ଜଗତରେ ଜଣେ ହିରୋ ହୋଇଥାନ୍ତି ଏ ବିଷୟରେ ଆପଣ କଣ ସନ୍ଦେହ କରୁଛନ୍ତି ? ସନ୍ଦେହ ଥିଲେ ଏଇ ଟେଳ ଘଟଣାଟି ଦେଖନ୍ତୁ । ଶାନ୍ତିନିକେତନରେ ମୋହନବାଗାନ ଓ ଇଷ୍ଟବେଙ୍ଗଲ ଭିତରେ ଖେଳ ହେଉଥାଏ । ସଭା ଆଗ ଧାଡ଼ିରେ ମୁଁ । ଜଣେ ଖେଳାଳୀ ପଛୁଆ ଦୌଡ଼ି

ଦୌଡ଼ି ଆସି ମୋ ପାଦ ଉପରେ ତାଙ୍କ କଣ୍ଟାମରା ବୁଟ ଜୋତା ସୁଦ୍ଧା ଚଢ଼ିଗଲେ । ମୁଁ ଷ୍ଟ୍ରେଚରରେ ବୁହାହୋଇ ଗଲି । ଆମଗାଁରେ ଯେମିତି କଥା ଅଛି ଖାଇ ମଲା କିଏ ନା ଧୂଷା ପଣ୍ଡା ନ ଖାଇ ମଲା କିଏ ନା ଲୋକା ପଣ୍ଡା ବଳଦ । ସେମିତି ଶାନ୍ତି ନିକେତନରେ କଥା ରହିଗଲା ଖେଳରେ ଆହତ ହେଲା କିଏ ନା ମୋହନବାଗାନ ଖେଳାଳୀ, ନ ଖେଳି ଆହତ ହେଲା କିଏ ନା ଦେବୀ ପଟ୍ଟନାୟକ । ଗାଁ ଖେଳାଧୂଳାରୁ ସହର, ଆଉ ସହରରୁ ଏସିଆର୍ଡ ଆଉ ଅଲିମ୍ପିକ ପରି ଖେଳ । ବେଳେ ବେଳେ ମନେହୁଏ ଏଇ ସବୁ ଖେଳରେ ମନ ଦେଇଥିଲେ ଗୋଟାଏ ଅଧେ ସୁନା, ରୁପା କି ତମ୍ବା ମେଡ଼ାଲ ମିଳି ଯାଇଥାନ୍ତା ପରା ? ପୁଣି ଭାବେ ଏଇଟା ଆମ ପରମ୍ପରା ବାହାରର କଥା । ଆମ ପରମ୍ପରାରେ ଆର୍ଥିକ ଅପେକ୍ଷା ପାରମାର୍ଥିକ, ସୁନାରୁପା ଅପେକ୍ଷା ଆଧ୍ୟାତ୍ମିକ ଦୃଷ୍ଟି ଉପରେ ଜୋର ଦିଆଯାଇଛି । ସେଇଥି ପାଇଁ ସମ୍ଭବତଃ ଭାରତୀୟ ଖେଳାଳୀମାନେ କୌଣସି ମେଡ଼ାଲ ପାଇବା ପାଇଁ ଧ୍ୟାନ ଦେଉନାହାଁନ୍ତି । ଆମେରିକା, ଋଷିଆ, ଚୀନ, କୋରିଆ ଯଦି ମେଡ଼ାଲ ପାଇଁ ମୁଣ୍ଡ ଫଟାଫଟି ହୁଅନ୍ତି, ସେଇଟା ତାଙ୍କ ପରମ୍ପରାର ଦୋଷ । ମୁଁ ଯଦି ଯାଇ ଗୋଟାଏ ଦିଟା ମେଡ଼ାଲ ପାଇଯାନ୍ତି ତା ହେଲେ ଏଇଟା ଆମ ପରମ୍ପରାର ବ୍ୟତିକ୍ରମ ହୁଅନ୍ତା । ଏଇ ଦୃଷ୍ଟିରୁ ଖେଳାଧୂଳାରୁ ମୁଁ ନିଜକୁ ନିବୃତ୍ତ କରିଛି ।

ଉତ୍ତରପୂର୍ବର ଜଣେ ଗଭର୍ଣ୍ଣରଙ୍କୁ ମୁଁ ଥରେ କହିଲି, ଆପଣ ଏଠି ଏକ ତୀରନ୍ଦାଜ ସ୍କୁଲ ବସାନ୍ତୁ । ସେ ପଚାରିଲେ ଆପଣ କଣ ଆମ ଆଦିବାସୀଙ୍କୁ ଆଦିମ ଅବସ୍ଥାରେ ରହିବାକୁ ଚାହାଁନ୍ତି ? ମୁଁ କହିଲି ତୀର ମାରିବା ଅତି ଆଧୁନିକ ଅଲିମ୍ପିକ ଖେଳର ଅଙ୍ଗ ହେଲାଣି । ଆମ ଏ ଅଞ୍ଚଳର ଆଦିବାସୀଙ୍କର ତୀରଚାଳନା ଦକ୍ଷତାକୁ କାମରେ ଲଗେଇ ଯଦି ଆନ୍ତର୍ଜାତିକ ଟ୍ରେନିଂ ଶିବିର ଖୋଲା ଯାଆନ୍ତା ତେବେ ଭଲ ହୁଅନ୍ତା ନାହିଁକି ? ଆଜି ଯେଉଁମାନେ ଆମ ଦେଶରେ ଖେଳାଳୀ ନାହାନ୍ତି ବୋଲି ଅବଶୋଷ କରୁଛନ୍ତି ତାଙ୍କ ଦୃଷ୍ଟି ଆମ ଗାଁମାନଙ୍କର ଧୂଳିଧୂଷରିଆ ଖେଳପଡ଼ିଆକୁ ଯାଉନାହିଁ । ନଈକୂଳିଆ କେଉଟ ପିଲାଙ୍କ ପହଁରା ଆଡ଼କୁ କାହାରି ଧ୍ୟାନ ନାହିଁ । ବଙ୍କୁଲୀ କାଠରେ ବେଲ, କଇଁଥ କି କନାବନ୍ଧା ଜୁଗ ପେଣ୍ଡୁ ଧରି ଯେଉଁମାନେ ହକି ଖେଳୁଛନ୍ତି କି ଯେଉଁ ପିଲାଏ କାଠି ତିନିଖଣ୍ଡ ପୋତି ଧୂଳି ପଡ଼ିଆରେ କ୍ରିକେଟ ଖେଳୁଛନ୍ତି, ସେଇମାନଙ୍କ ଭିତରେ ଯେ ଭବିଷ୍ୟତର ଖେଳାଳୀ ଲୁଚି ରହିଛନ୍ତି, ଏ କଥା ଭୁଲିଗଲେ ଚଳିବନାହିଁ । ଏତେ ବଡ଼ ଦେଶରେ ଖାଲି ସ୍କୁଲ କଲେଜର ପିଲାଙ୍କ ଭିତରୁ ଖେଳାଳୀ ଖୋଜିଲେ ହତାଶ ହେବାକୁ ହିଁ ହେବ ।



# ନାଁ ଦିଆ

ନାଁରେ କଣ ଅଛି ? ରାମକୁ ଭୀମ ଡ଼ାକିଲେ କିମ୍ବା ସୀତାକୁ ଗୀତା ଡ଼ାକିଲେ କଣ ଫରକ ? ଅଧିକାଂଶଙ୍କ ପାଇଁ ନାଁ ହେଉଚି ଗୋଟିଏ ଚିହ୍ନ । ଗୋଟିଏ ସଂଖ୍ୟା କିମ୍ବା ଗୋଟିଏ ଛାପ । କିନ୍ତୁ ଆଉ କେତେକଙ୍କ ପାଇଁ ନା ହେଉଚି ଆପଣାର ଅସ୍ତିତ୍ୱ, ଅସ୍ମିତା, ଆପଣାର ଜୀବନରେଖା, ନାଁ ଜରିଆରେ ରୂପର ଚିହ୍ନ । ନାଁ ନ ଥିଲେ ଆମେ କେହି ନୁହେଁ ।

ଶବ୍ଦର ଅର୍ଥ ଅଛି । ନାଁ ହେଉଚି ସ୍ୱତନ୍ତ୍ର ଅର୍ଥଯୁକ୍ତ ଶବ୍ଦ । ବିଶେଷ୍ୟ ଶବ୍ଦ ମଧ୍ୟରେ ନାଁ ବିଶିଷ୍ଟ । ପ୍ରତି ସଂସ୍କୃତିରେ ନାଁ ଦେବାର ସ୍ୱତନ୍ତ୍ର ପଦ୍ଧତି ଅଛି । ପ୍ରତି ସଂସ୍କୃତିରେ ନାଁ ଦିଆ ଏକ ଉତ୍ସବ । ମନୁଙ୍କ କହିବା ଅନୁସାରେ ଝିଅମାନଙ୍କ ନାଁ ମନମୋହକ, ଅର୍ଥଯୁକ୍ତ ଓ ସୁନ୍ଦର ହେବା ଉଚିତ୍ । ଯେଉଁ ଝିଅମାନଙ୍କ ନାଁ ନକ୍ଷତ୍ର, ଗଛଲତା, ପର୍ବତ, ପକ୍ଷୀ ଓ ସାପ ନାଁ ଥିବ ସେପରି ଝିଅଙ୍କୁ ବାହାହେବାକୁ ସେ ବାରଣ କରିଥିଲେ । ହେଲେ ଏଥିରେ ମଧ୍ୟ ବ୍ୟତିକ୍ରମ ଅଛି । ଗଙ୍ଗା, ଯମୁନା, ଗୋମତୀ ପରି ନଦୀର ନାଁ, ମାଳତୀ, ତୁଳସୀ ପରି ଗଛର ନାଁ, ରେବତୀ, ଅଶ୍ୱିନୀ, ରୋହିଣୀ ପରି ନକ୍ଷତ୍ରର ନାଁ ଏଥିରୁ ବାଦ୍ ।

ଡେନମାର୍କର ପିଲାଙ୍କ ନାଁ ଦିଆ ହେଲାବେଳେ-ସେନ (ଅମୁକଙ୍କ ପୁଅ) କିମ୍ବା-ଦର (ଅମୁକଙ୍କ ଝିଅ) ଯୋଡ଼ା ହୋଇଥାଏ । ଫ୍ରାନ୍ସରେ ଆଇନ୍ ବିଭାଗ ଦ୍ୱାରା ଅନୁମୋଦିତ ଏକ ନାଁ ତାଲିକା ମଧ୍ୟରୁ ପିଲାର ନାଁ ଦିଆଯିବ । ଆଇନଗତ ଭାବରେ ନାଁ ସ୍ୱୀକୃତି ପାଇବା ପାଇଁ ଏହା ପ୍ରୟୋଜନ । ହାୱାଇରେ ପିଲାର ଜନ୍ମ ବେଳରେ ଘଟିଥିବା କୌଣସି ଘଟଣା କିମ୍ବା ଅତୀତର କୌଣସି ଘଟଣାକୁ ଧରି ପିଲାର ନାଁ ଦିଆଯାଏ । ଆମେରିକାରେ କଳା ଲୋକେ ଏକ ସମୟରେ ସେମାନଙ୍କର ଆଫ୍ରିକା ମୂଳ ଜାହିର କରିବା ପାଇଁ ଆଫ୍ରିକାରୁ ନାଁ ଲୋଡୁଥିଲେ । ଜବରି (ସ୍ୱାହିଲି—ସାହସୀ), ୱାଲିଦା (ଆରବୀ-ନବଜାତକ) ଜକରି (ସ୍ୱାହିଲି —ସବୁ ପ୍ରତିଶ୍ରୁତି) ଆଦି ଏହାର ଉଦାହରଣ ।

ଆମେରିକା, କାନାଡ଼ା ପରି ଭାରତରେ ମଧ୍ୟ ବହୁ ସଂସ୍କୃତିର ମିଳନ ହେତୁ ବିଭିନ୍ନ ନାଁ ଦିଆ ପଦ୍ଧତି ଦେଖିବାକୁ ମିଳେ । ପରିବାର, ଜାତି, ଧର୍ମ, ବିଶ୍ୱାସ ଉପରେ ଏ ପଦ୍ଧତି ସବୁ ନିର୍ଭର । ହିନ୍ଦୁମାନଙ୍କ ମଧ୍ୟରେ ଜାତକ ତିଆରି କଲା ବେଳେ ମୂଳ ଅକ୍ଷରକୁ ଧରି ନାଁ ଦିଆଯାଇଥାଏ । ଏହାଛଡ଼ା ଶ୍ରଦ୍ଧାନାମ ମଧ୍ୟ ଥାଏ । ସେମିତି ମୂଳ ଅକ୍ଷରକୁ ଧରି ନାଁ ଅପରାଜିତା ହେଲେ ଶ୍ରଦ୍ଧାନାମ ହେଲା ଲିପି ।

ନାଁରେ ଏକାଧିକ ଅଙ୍ଗଥିବା ବହୁ ପୁରୁଣା । ବାବିଲୋନିଆନଙ୍କ ମଧ୍ୟରେ ଦୁଇ କିମ୍ବା ଅଧିକ ନାଁ ଥିଲା । ସେମାନଙ୍କ ମଧ୍ୟରେ ତିନୋଟି ଅଙ୍ଗ ଥିଲା । ଗୋଟିଏ ପୂର୍ବ ନାମ, ଗୋଟିଏ ପାରିବାରିକ ନାଁ, ଓ ଆଉ ଗୋଟିଏ ଆପଣାକୁ ଚିହ୍ନିତ କରୁଥିବା ନାଁ । ଆମ ଦକ୍ଷିଣ ଭାରତ

ନାଁରେ ଗାଁ ନାଁ, ବାପ ନାଁ, ଆପଣା ନାଁ, ନାଁ ଜାତି ଗୋତିଆଣ ନାଁ ଆଦି ଥାଏ । ଯେମିତି ଜଣକ ନାଁ କନ୍ନ ମୁରିବୀର ଭେଙ୍କଟ ଲକ୍ଷ୍ମୀ ନରସିଂହ ରାଓ । କନ୍ନ ମୁରି ଗାଁ ନାଁ, ବୀରଭେଙ୍କଟ ବାପାଙ୍କ ନାଁ, ଲକ୍ଷ୍ମୀ ନରସିଂହ ଆପଣା ନାଁ ଆଉ ରାଓ କୌଳିକ ପରିଚୟ ।

ଆମ ଦେଶରେ ମାସ (କାର୍ତ୍ତିକ), ଦିନ (ଗୁରୁବାର), ତିଥି (ଏକାଦଶୀ) ଦେବାଦେବୀଙ୍କ ନାଁ (ଶିବ, ବିଷ୍ଣୁ, ଲକ୍ଷ୍ମୀ, ଦୁର୍ଗା) ପଶୁପକ୍ଷୀଙ୍କ ନାଁ (ବାଘ, ବଣି), ପ୍ରକୃତି (ମେଘ, ପବନ, ବର୍ଷା), ନଈ ପର୍ବତ (ଗଙ୍ଗା, ମହେନ୍ଦ୍ର), ନକ୍ଷତ୍ର (ରୋହିଣୀ), ଘଟଣା (ବିକାକିଣା, ଛକଡ଼ି, ନକଡ଼ି) ଆଦି ବିଭିନ୍ନ ପ୍ରକାରେ ନାଁ ଦିଆଯାଇଥାଏ । ପୁଣି ଯମ ନାଁ ଶୁଣି ଯେମିତି ମୁହଁ ମୋଡ଼ିବ ସେଇଥିପାଇଁ ହାଡ଼ି, ମୋଚି ଓ ପଠାଣ ପରି ନାଁ ମଧ୍ୟ ଦିଆଯାଏ । ତଳ ବୋଲି ବିଚାର କରାଯାଉଥିବା ଜାତିମାନଙ୍କର ନାଁ ଆପଣେଇ ଆପଣାକୁ ସୁରକ୍ଷିତ ରଖିବାର ଏଇ ତତ୍ତ୍ୱ ଯେ କେତେ ମନୋରମ ଟିକିଏ ଭାବିଲେ ସହଜେ ବୁଝିହେବ ।

ଆପଣା ସମ୍ପତ୍ତି ବିଚାର କରାଯାଉଥିବା ପଶୁପକ୍ଷୀଙ୍କ ନାଁ ଦେଖିଲେ ଅବାକ୍ ଲାଗେ । କୃଷ୍ଣଙ୍କର ଗାଈଙ୍କ ନାଁ ଧବଳୀ, ଶ୍ୟାମଳୀ, ନୀଳି, କୁଞ୍ଜଗଳି, ଆଜିକାର କୃଷ୍ଣବାବୁଙ୍କ କୁକୁର ମାନଙ୍କର ଇଂରାଜୀ ନାଁ–ଟାଇଗର, ଡ଼ାଏନା । ମୋର ବାପା ଆପଣା ଉତ୍ସାହରେ ପୁଅ ନାଁ ଲେନିନ୍ ଆଉ କୁକୁର ନାଁ ଷ୍ଟାଲିନ୍ ଦେଇଥିଲେ । ବର୍ତ୍ତମାନ ସୋଭିଏତ ସମାଜର ଦୃଷ୍ଟିରେ ଏଇ ନାଁର ପରିଣାମ ସହଜେ ଦେଖିହେବ ।

ନାଁ ବଦଳେଇବାର ଢ଼େଉ ଦେଖିଲେ ହସ ଲାଗେ । ସମାଜର ସମାନତା ନାଁରେ ଲାଙ୍ଗୁଳକଟା ଦଳକୁ ଦେଖିଲେ ହସ ମାଡ଼େ ଯେତିକି ଅବାକ୍ ଲାଗେ ସେତିକି । ମହାନ୍ତି, ପରିଡ଼ା, ବଳିଆର ସିଂ ଆପଣା ପଦବୀ ତ୍ୟାଗକରି ହେଲେ ହର୍ଷକୁମାର, ରମେଶଚନ୍ଦ୍ର ଆଉ ସଚ୍ଚିଦାନନ୍ଦ । ଲୁଚିଚି ନା ଗୋଡ଼ ଦିଇଟି ଦିଶୁଚି । ପଦବୀ ଲୋପ ସଙ୍ଗେ ସଙ୍ଗେ ସାମାଜିକ ଚଳଣୀରେ ଯେ ଆପଣାର ଅସ୍ମିତା ଫୁଟି ଦିଶୁଚି ଯା ପ୍ରତି କାହାରି ନଜର ନାହିଁ ।

ଜାଗା ନାଁରେ ଅଦଳ ବଦଳ ଆହୁରି ମଜାର କଥା । ସିଲୋନ ହେଲା ଶ୍ରୀଲଙ୍କା ତ ବର୍ମା ହେଲା ମିଆନମ୍ୟାର । କର୍ଜନ ରୋଡ଼ ହେଲା କସ୍ତୁରବା ଗାନ୍ଧୀ ମାର୍ଗ ତ ଲାଲ ଦୀଘି ହେଲା ବିବାଦୀ ବାଗ । ବିନୟ, ବାଦଲ, ଦୀନେଶ ଏପରି ତିନି ତିନି ଜଣ ବିପ୍ଳବୀଙ୍କ ନାଁ ମନେ ରଖିବାକୁ ନାଁ ହେଲା ବିବାଦୀ ବାଗ । ହେଲେ କାହା ନାଁରେ ଏମ ଜି ରୋଡ଼ ହୋଇଚି ଏ କଥା ଯେମିତି କାହାରି ମନେ ନାହିଁ ସେମିତି ବିବାଦୀ ବାଗ କଣ ପାଇଁ ହୋଇଚି କାହାରି ମନେ ନାହିଁ । କୋଉ ପୁରୁଷର ବିବାଦକୁ ମନେ ପକେଇ ଦେବାକୁ ଏକରି ନାମକରଣ ହୋଇଚି ବୋଲି ନୂଆ ଲୋକକଥାର ସୃଷ୍ଟି ହେଲାଣି ।

ଡ଼ାକ ନାଁ ଦେବା ଆଉ ଗୋଟିଏ କଥା । ରମେଶକୁ ରମି, ପଦ୍ମନକୁ ପଦୀ, ଦୀନେଶକୁ ଦୀନୁ, ପଟ୍ଟନାୟକଙ୍କୁ ପଟ୍ଟୁ ଡ଼ାକିବା ହେଲା ଡ଼ାକ ନାଁ । ପୁଣି ଶ୍ରଦ୍ଧା ଯୋଗୁଁ ଲୋକଙ୍କୁ ନାଁ

ଦେବୀଙ୍କୁ ଇଂରାଜୀରେ Agnomess କୁହାଯାଏ । ରୋମାନ ମାନଙ୍କ ଭିତରେ ଏହାର ଚଳଣି ଥିଲା । ରାଜକୀୟ ମନୋରଞ୍ଜନ ଦାୟିତ୍ୱରେ ଥିବା ଲୋକଙ୍କର ନାଁ ଥିଲା Arbiter Eliganlias. 'ଉତ୍ତମ ରୁଚିର ବିଚାରକ' । ତାମିଲ ମାନଙ୍କ ମଧ୍ୟରେ ଏହାର ବହୁଳ ପ୍ରଚାର ଅଛି । କରୁଣାନିଧିଙ୍କୁ 'କଳାର ଆକର' ଓ ଜୟଲଳିତାଙ୍କୁ 'ବିପ୍ଳବର ଝିଅ' ଆଖ୍ୟାରୁ ଏହା ସହଜେ ବୁଝିହେବ । ଆମର କବିଚନ୍ଦ୍ର, କବି ସମ୍ରାଟ, ଲୋକରତ୍ନ ଏଇ ପର୍ଯ୍ୟାୟର । ରୋମାନ ପରମ୍ପରା ଅନୁକରଣରେ ଆମ ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କୁ Cunctator 'ଦୀର୍ଘସୂତ୍ରୀ' ନାଁ ଖୁସବନ୍ତ ସିଂହ ଦେଇଛନ୍ତି । କୌଣସି କଥାର ସମାଧାନ ନ କରି ସିଦ୍ଧାନ୍ତକୁ ପଛକୁ ଘୁଞ୍ଚେଇବା ତ ଦୀର୍ଘସୂତ୍ରୀଙ୍କ ଲକ୍ଷଣ ।

ସଙ୍ଗାତ, ମଇତ୍ର, ବଉଳ, ତୁଳସୀ ଆଦି ବିଭିନ୍ନ ସଂପର୍କର ନାଁ । ଏଗୁଡ଼ିକ ସଂପର୍କର ଘନିଷ୍ଠତାର ଦ୍ୟୋତକ । ଦୁଇ ଘନିଷ୍ଠଙ୍କ ମଧ୍ୟରେ ଏପରି ସଂପର୍କ ହେଲେ ନାଁ ବଦଳରେ ଏହି ଡ଼ାକହିଁ ଚଳେ । ଏଇଥିରୁ ନାଁ 'ବଅିବା' କଥା ମନକୁ ଆସେ । ସ୍ୱାମୀ କିମ୍ବା ଦେଢ଼ଶୁରଙ୍କ ନାଁ ନ ଧରିବାରୁ ରାଜକୁ ନାଜ, ମଧୁକୁ ନଧୁ କହିବା ଏହାର ଉଦାହରଣ ।

ଆମ ପରମ୍ପରାରେ ଜଣ ଜଣଙ୍କର ବହୁତ ନାଁ ଥିବାର ଉଦାହରଣ ଦେବାଦେବୀଙ୍କ ନାଁରୁ ଜଣାଯାଏ । ଲକ୍ଷ୍ମୀଙ୍କର ପର୍ଯ୍ୟାୟ ଦେବାକୁ ଯାଇ ଅମରକୋଷ କହନ୍ତି, ଲକ୍ଷ୍ମୀ ପଦ୍ମାଳୟା ପଦ୍ମା କମଳା ଶ୍ରୀ ହରିପ୍ରିୟା । ଇନ୍ଦିରା ଲୋକମାତା ମା କ୍ଷୀରାବ୍ଧିତନୟା ରମା । ପୁଣି ଗୋଟିଏ ନାଁର ବହୁତ ଅର୍ଥ ଥିବାରୁ 'ହରି ପଳେଇଲେ ହରି ଗୋଡ଼େଇଲେ ହରି ଡ଼ାକ ଦେଲେ ହରିଙ୍କି, ହରିଙ୍କ ଭିତରେ ହରି ପଶିଗଲେ ହରି ରକ୍ଷାକଲେ ହରିଙ୍କି' ପରି ପହଳିର ସୃଷ୍ଟି ।

ନାଁ ହେଉଚି ମଣିଷର ପରିଚୟ । ପିଲାର ହେତୁ ହେଲା ଦିନୁ ନାଁ ଦେଇ ଚିହ୍ନି ଚିହ୍ନେଇ ସିଏ ପୃଥିବୀ ସହିତ କୁଟୁମ୍ବିତା କରେ । ନାମ ନ ଥିଲେ ସବୁ ରୂପ । ଏଇ ନାମ ରୂପର ସମ୍ବନ୍ଧ ନ ଜାଣିଲେ ପୃଥିବୀ ଅଚଣା ରହିଯିବ ।



# ପଶ୍ଚିମ ଓ ପୂର୍ବ

କୋରାନରେ ଲେଖା ଅଛି, ''ଯଦି ଭଗବାନ ମଣିଷର ଯାହା ପ୍ରାପ୍ୟ ସେହି ଅନୁପାତରେ ତାକୁ ଦଣ୍ଡ ଦିଅନ୍ତେ, ତେବେ ସେ ପୃଥିବୀ ଉପରେ ଜନ୍ତୁଟିଏ ସୁଦ୍ଧା ଛାଡ଼ି ନ ଥାନ୍ତେ ।'' ମଣିଷ ପ୍ରତି ଭଗବାନଙ୍କର ଦୁର୍ବଳତା ଯୋଗୁଁ ହେଉ ବା ତାଙ୍କର କମ୍‌ଜୋର ପଣିଆଁ ହେତୁ ହେଉ ସିଏ ହୁଏତ ଦଣ୍ଡ ଦିଅନ୍ତି ନାହିଁ । ହେଲେ ତାହା ମଣିଷର ଦୋଷ

ତୁଳନାରେ ପର୍ଯ୍ୟାପ୍ତ ନୁହେଁ । ହିନ୍ଦୁ ଧର୍ମଶାସ୍ତ୍ର ମାନଙ୍କରେ ଆପଣା କର୍ମରେ ଫଳଭୋଗ ଜନ୍ମଜନ୍ମାନ୍ତରରେ ମଧ ଲାଗିଥାଏ । ଧର୍ମ ନିକିତିରୁ କାହାରି ଉଦ୍ଧାର ନାହିଁ ।

ଧର୍ମ ଓ ଭଗବାନଙ୍କୁ ବିଚାର ସୀମାର ବାହାରେ ରଖିଲେ ବାକି ରହିଲା ମଣିଷର ଖାଲି । ମଣିଷର ଅହଂକାର ଅପରକୁ ସାନ କରେ । ବଳୁଆ ନିର୍ବଳୁଆ ଉପରେ ରାଜୁତି କରେ । ଚାଲାକ ଚତୁର ସାଧାରଣ ମଣିଷକୁ ଠକେଇ ଆପଣାର ବଡ଼ତି ଘୋଷଣା କରେ । ଅହଂକାରର ଗୋଟିଏ ଦିଗ ଦେହବୋଧ । ଆପଣା ଦେହ, ତାକୁ ସଜେଇବାର ସରଞ୍ଜାମ, ମାଂସର ଭୋକ ମେଣ୍ଟାଇବାର ଦାବୀ, ଦେହରୁ ସୁଖ, ଆଉ ସୁଖ ପାଇଁ ପଇସା ରୋଜଗାର– ଇଏ ହେଲା ଗୋଟିଏ ଧାରା । ଏହାର ଏକ ବିକଳ୍ପ ହେଲା ଯେ ଗରୀବ, କୁଂଖୁରଙ୍କି, ଭୋକିଲା, ବାସହୀନ, ଏମାନେ ତ ଦିଶନ୍ତି ନାହିଁ, ଏମାନଙ୍କ ପ୍ରତି ଯେ ଅନ୍ୟାୟ କରାଯାଉଛି ଏ କଥା ମଧ ମନକୁ ଆସେନାହିଁ । ଫଳରେ ଏହି ଅହଂର ଲଢ଼େଇରୁ ହିଂସାର ସୃଷ୍ଟି । ହିଂସା ହେଲେ ଯାଇ ମଣିଷର ଘୁମ ଭାଙ୍ଗେ । ହିଂସା ନୋହିଲା ଯାଏ ପୃଥିବୀ କାଲା ।

ସାର୍ତ୍ରଙ୍କ ଭାଷାରେ କହିଲେ, ''ମଣିଷ କିଛି ଇଚ୍ଛା କରି ପାରିବ ନାହିଁ, ଯେତେବେଳେ ପର୍ଯ୍ୟନ୍ତ ସିଏ ନ ବୁଝିଛି ଯେ ସେ ନିଜ ବ୍ୟତୀତ ଅନ୍ୟ କାହାରି ଉପରେ ଭରସା କରି ପାରିବ ନାହିଁ ।'' ଏଇ ଆପଣା ଉପରେ ଭରସାରୁ ବଢ଼ନ୍ତା ଆଶା ଆଉ ନୈତିକ ଅସନ୍ତୋଷ । ଏଇଥିରୁ ଆପଣା ସାର୍ଥକ କାମ । ଯେହେତୁ ଆପଣା ବ୍ୟତୀତ କାହାରି ଉପରେ ଭରସା ନାହିଁ, ତେଣୁ ଆଉ କାହାପାଇଁ କାମ କରିବା ପ୍ରଶ୍ନ ବା ଉଠୁଚି କେଉଁଠୁ ?

ପଶ୍ଚିମର ଇତିହାସରେ କାମ ପ୍ରତି ଘୃଣା ଲିପିବଦ୍ଧ । ଗ୍ରୀକ୍‌ମାନେ କାମକୁ ଅଭିଶାପ ମଣୁଥିଲେ । ହୋମରଙ୍କ ମତରେ 'ଇଶ୍ବର ମଣିଷକୁ ଘୃଣା କରନ୍ତି । ସେଇ ରାଗରୁ ସେ ମଣିଷକୁ କାମ କରିବା ଅଭିଶାପ ଦେଇଛନ୍ତି ।' ବାଇବେଲ ମତରେ, ''କାମ ହେଉଛି ଇଶ୍ବରଙ୍କ ଅଭିଶାପ, ଯାହା ଆଦିମ ଓ ଭୟଙ୍କର ଅବାଧତା ଓ ଅକୃତଜ୍ଞତାର ଦଣ୍ଡ ।'' ୟୁହୁଦୀ ମାନଙ୍କର ଧର୍ମଗ୍ରନ୍ଥ ତାଲ୍‌ମୁଡ୍‌ରେ କୁହାଯାଇଚି, ''ଯଦି ମଣିଷ ପଶୁପକ୍ଷୀଙ୍କ ପରି ଆପଣା ଆହାର ଯୋଗାଡ଼ କରି ନପାରେ, ଆଉ ସେଥିପାଇଁ ତାକୁ କାମ କରିବାକୁ ପଡ଼େ ତେବେ ଏହା ପାପର ଫଳ ।'' ୟୁହୁଦୀମାନେ ଈଶ୍ବର ଇଚ୍ଛା ବିଷୟରେ ଆପଣା ମତର ଯେପରି ବୈପ୍ଳବିକ ପରିବର୍ତ୍ତନ ଘଟେଇଲେ, ତାହା ପରବର୍ତ୍ତୀ କାଳର କଥା । ପ୍ରୋଟେଷ୍ଟାଣ୍ଟମାନେ ଆସିଲା ପରେ ପଶ୍ଚିମରେ କାମ ପ୍ରତି ମନୋଭାବ ବଦଳିଲା । ମାର୍ଟିନ ଲୁଥର କହିଲେ କାମ ମାଧ୍ୟମରେ ହିଁ ଈଶ୍ବରଙ୍କ ପ୍ରକୃତ ସେବା ସମ୍ଭବ । ପ୍ରକୃତ ପକ୍ଷେ କାଲଭିନିଷ୍ଟମାନେ କାମକୁ ଅର୍ଥକରୀ କହି ସୁଧ ଓ ଲାଭ ସହିତ ଏହାକୁ ଯୋଡ଼ି ପୁଞ୍ଜିବାଦର ମୂଳଦୁଆ ପକାଇଲେ ।

କିନ୍ତୁ ପୂର୍ବରେ, ବିଶେଷ କରି ଭାରତରେ କାମ ହେଉଚି ଯୋଗ । ଧର୍ମ, ଅର୍ଥ,

କାମ, ମୋକ୍ଷ କର୍ମ ସଂଯୁକ୍ତ । କିନ୍ତୁ ଏଇ କର୍ମ ପୁଣି ବାସନା ବିରହିତ, ଫଳଇଚ୍ଛା ବିବର୍ଜିତ । କର୍ମ ଆପଣା ପାଇଁ ନୁହେଁ, ସମାଜ ଧର୍ମର ରକ୍ଷା ପାଇଁ । କାମରେ ପ୍ରତ୍ୟେକର ଅଧିକାର ଅଛି, କିନ୍ତୁ ଫଳରେ ନାହିଁ । ଏହାହିଁ ତ ଗୀତାର ଶିକ୍ଷା । ନିଷ୍କାମ କର୍ମ ଖାଲି ବ୍ୟକ୍ତିକୁ ନୁହେଁ, ସମାଜକୁ ଉନ୍ନତ କରେ । ଏଇଥିରୁ 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ' ପରି ଚିନ୍ତାର କଳ୍ପନା । ବ୍ୟକ୍ତି ସହିତ ବ୍ୟକ୍ତି ଯୋଡ଼ି ହୋଇ 'ବସୁଧୈବ କୁଟୁମ୍ବକମ୍'ର କଳ୍ପନା ।

ପଶ୍ଚିମର ଚିନ୍ତା ରୈଖିକ । ପ୍ରତ୍ୟେକ ପଦରେ ତୁମେ ଅଥବା ମୁଁର ଲଜିକ୍ । ଏହି 'ଅଥବା' ମଣିଷକୁ ବାଦ ଦିଏ । ଭାରତର ଲଜିକ୍ ଆମେ ଦୁହେଁ ଏବଂ ଏହା ମଣିଷ ସାଙ୍ଗରେ ମଣିଷକୁ ଯୋଡ଼େ ।

ଯେଉଁମାନେ ଭାରତର ସବୁ ଚିନ୍ତା, ଆଚାର ବିଚାରକୁ ନବ୍ୟଯୁଗୀୟ କହି ଫୋପାଡି ଦେଇ ପଶ୍ଚିମୀ ଆଚାରକୁ ଆଧୁନିକ କହି ଆବୋରି ବସନ୍ତି ସେମାନେ ଯେ କେତେ ଅଶିକ୍ଷିତ ଏଇ କଥାରୁ ବୁଝିହେବ । ଜଗନ୍ନାଥ ଦାସ କହିଥିଲେ, ''ସକଳ ବୈଷ୍ଣବ ପୂଜିବ, ଆପଣା ସୂତ୍ର ନ ଛାଡିବ ।'' ଗାନ୍ଧୀ କହିଥିଲେ, ମୁଁ ମୋର ଦୁଆର ଝରକା ଖୋଲା ରଖିବି ଯାହା ଫଳରେ ସବୁଆଡର ପବନ ମୋ ଘରେ ସ୍ୱଚ୍ଛନ୍ଦରେ ବୁଲି ପାରିବ । କିନ୍ତୁ ଏ ପବନରେ ମୋ ଗୋଡ଼ ଭୂଇଁଛଡ଼ା ହେବାକୁ ମୁଁ ଦେବି ନାହିଁ । ଆଜି ଆମେ ଆମର ଅସ୍ମିତା ବୁଝିବା ଏକାନ୍ତ ପ୍ରୟୋଜନ ହୋଇପଡ଼ିଛି । ଆଧୁନିକତା ନାଁରେ ଆମେ ଯଦି ଆମ ଦୁଆର ଶୋଷକ, ଚ଼ଞ୍ଚକଙ୍କ ପାଇଁ ଖୋଲି ଦେବା ତେବେ ଆମ ଗୋଲାମୀ ପାଇଁ ଆମେ ହିଁ ଦାୟୀ ହେବା ।



# ପାଣି

ମୁଁ ଆପଣଙ୍କୁ ପାଣି କଥା କହିବାକୁ ଯାଉଛି । ଇଏ ଜଗଦୀଶ ପାଣିଙ୍କ କଥା ନୁହେଁ । ଆପଣ ନିଶ୍ଚେ 'ଘଷର ଘଷର ଆହୁରି ଘଷର ପେଁଏରେ ଘଷର ପାଣି, ତମେ ଯହିଁ ପାଇଁ ନସର ପସର ଆମେ ସେଇ କଥା ଜାଣି' କଥାଟି ଶୁଣିଥିବେ । ମୁଁ ସେ ପାଣି କଥା ବି କହୁନି । କୋଉ ପାଣି କୁଆଡ଼େ ଗଲାଣି ବିଷୟରେ ବିଚାର କରିବା ମୋର ଉଦ୍ଦେଶ୍ୟ ନୁହେଁ । 'ଆଣ୍ଠୁ ଏଡ଼େ, ପାଣି ପଡ଼ିଲେ ହବୁ କେଡ଼େ' ବିଷୟରେ ବିଚାର ଆଲୋଚ଼ନା କରି ଉପଦେଶ ଦେବାର ଇଚ୍ଛା ବି ମୋର ନାହିଁ । ଆପଣ ଭାବୁଥିବେ ମୁଁ ଭାଷା ବିଜ୍ଞାନୀ । ପାଣିର ବ୍ୟୁତ୍ପତ୍ତି କି ଆଞ୍ଚଳିକ ରୂପ ବିଷୟରେ କିଛି କହିବି, ତା ନୁହେଁ । ପାଣି, ଜଳ, ନୀର, ଏସବୁ ସମାର୍ଥବାଚ଼କ କି ନୁହେଁ ଏ ବିଷୟରେ ବିଚାର ଏଠି ହେଉନାହିଁ । ପାଣି ଗ୍ରହଣ କଥା ଭାବି

ଆପଣ ଯଦି କୁରୁଳି ହେଉଥାନ୍ତି ତେବେ ସେ କଥା ଭୁଲି ଯାନ୍ତୁ । ମୁଁ ଏଠି ପିଇବା ପାଣି ବିଷୟରେ ମୋର ଦୁଇ ଦେଶର ଅଭିଜ୍ଞତା ବିଷୟରେ ଦି'ପଦ କହିବି ।

ପିଇବା ପାଣି କଥା କହିଲା ବେଳେ ମୋର ଜଣେ ପିଇବା ବନ୍ଧୁଙ୍କ କଥା ମନେ ପଡ଼େ । ସିଏ ମୋ ପାଣି ପିଇବା ଦେଖି ଥଟ୍ଟା କରି ସବୁବେଳେ କହୁଥିଲେ, ପାଣି ହେଉଚି ସବୁଠୁ ବଡ଼ ମାଦକ ପଦାର୍ଥ । ମୁଁ ହୁଇସ୍କି ସାଙ୍ଗରେ ପାଣି ପିଇଚି । ରମ ସାଙ୍ଗରେ ପାଣି ପିଇଚି, ଜିନ ସାଙ୍ଗରେ ପାଣି ପିଇଚି, ବ୍ରାଣ୍ଡି ସାଙ୍ଗରେ ପାଣି ପିଇଚି । ଏଥିରୁ ପ୍ରମାଣ ହେଲା ଯେ ପାଣି ହେଉଚି ଏକମାତ୍ର ପଦାର୍ଥ ଯାହା ଏ ଚାରି କ୍ଷେତ୍ରରେ ସାଧାରଣ । ତେଣୁ ପାଣି ହିଁ ମାଦକ । କଥା ହେଉଚି ପ୍ରକୃତରେ ମୋ ପାଇଁ ପାଣିର ମାଦକତା ସବୁଠୁ ବେଶୀ । ସକାଳୁ ଉଠିଲେ ପାଣି ଗ୍ଲାସେ ନ ହେଲେ ମୋ ଦେହ ମନ ପରିଷ୍କାର ଲାଗେନାହିଁ । ଦିନ ଭିତରେ ଅନ୍ତତଃ ଦଶ ଗ୍ଲାସ ପାଣି ମୋର ଦରକାର । ରାତିରେ ଦିଗ୍ଲାସ । ଏଥିପାଇଁ ବନ୍ଧୁ ବନ୍ଧୁ ମୋତେ ଥଟ୍ଟା କରନ୍ତି । କେବେ କେବେ ଥଣ୍ଡା ଗରମ ଜାତୀୟ ଜିନିଷ ପିଇଲେ ପାଣିର ପରିମାଣ ହୁଏତ ଟିକିଏ କମିଯାଏ । ତେବେ କଥା ହେଉଚି ଚା, କଫି, ସର୍ବତ, ବା କୋଲା ଜାତୀୟ ଜିନିଷ ଆଜିକାଲି ସରକାରୀ ସଭ୍ୟତାର ଅଙ୍ଗ ହେଲା ଦିନୁ ମତେ ଏଥିରୁ ବେଶି କିଛି ଗିଳିବାକୁ ପଡ଼େ । ଭଲରେ ନ ହେଲେ କିଛି ଗାଳି, ମୁହଁଫୁଲା କିମ୍ବା ଥଟ୍ଟା ତା ସାଙ୍ଗରେ ଗିଳିବାକୁ ହେବ । ତେଣୁ କଥା ନ ମାଡି ଯାହା ଯେଉଁଠି ମିଳିଲା ପ୍ରାପ୍ତ ମାତ୍ରେଣ ଭୋକ୍ତବ୍ୟଂ । ତେବେ ଭଲ ପାଣି ଏ ସବୁ ଅପେକ୍ଷା ମୋର ଆଦରର ଜିନିଷ । ଏ କଥା ମୁଁ କହି ରଖୁଚି ।

ଥରେ ମୁଁ ତ୍ରିନିଦାଦ ଯାଇଥାଏ । ଭାରତ ସରକାର ମୋର ଦେଖାଶୁଣା କରିବାକୁ ସେଠିକାର ରାଜଦୂତଙ୍କୁ ସ୍ୱତନ୍ତ୍ର ଭାବେ ଅନୁରୋଧ କରିଥାନ୍ତି । ମୋ ପାଇଁ ସେଠିକାର ଗୋଟିଏ ଭଲ ହୋଟେଲରେ ରହିବା ବ୍ୟବସ୍ଥା ହୋଇଥାଏ । ମୁଁ ସେଠି ପହଞ୍ଚିଲା ଦିନ ବେଶି କ୍ଳାନ୍ତ ହୋଇଥାଏ । ଖାଇ ପିଇ ଶୋଇ ପଡ଼ିଲି । ରାତିରେ ଶୋଷ ହେଲା, ହେଲେ ଉଠିବାକୁ ମନ କଲା ନାହିଁ କି ଦିହ ଚଳିଲା ନାଇଁ । ବଡି ପାହାନ୍ତାରୁ ଘଣ୍ଟି ବଜାଇଲି । ଜବାବରେ ଜଣେ ଆସିଲେ । ମୁଁ କହିଲି ମୋର ପିଇବା ପାଣି ଦରକାର । ସେ ମୋତେ ଅବିଶ୍ୱାସ ଆଖିରେ କିଛି ସମୟ ଚାହିଁ କହିଲା କିଛି ଡ୍ରିଙ୍କ ଦରକାର ? ମୁଁ କହିଲି, ନା ପିଇବା ପାଣି । ତେବେ ଆପଣ ତଳ ମହଲାରେ ଡ୍ରାଇନିଂ ରୁମ୍‌କୁ ଯାଆନ୍ତୁ । ମୁଁ ଚଟାପଟ ହାତମୁହଁ ଧୋଇ ଏକାଥରେ ପାଣି ପିଇ ସକାଳ ବୁଲା ପାଇଁ ଯିବାକୁ ବାହାରିଲି । ସକାଳ ଛଅଟା । ଜଳଖିଆ ଆରମ୍ଭ ହୋଇଗଲାଣି । ଶୁଖିଲା ମାଛ ଭଜା ଆଉ ବିଅର । ମୁଁ ଟାଟକା ହୋଇଗଲି । ଯାହାକୁ ପାଣି ମାଗେ ସେ ବୋତଲେ ବିଅର ଆଣି ଥୁଅନ୍ତି । ନା, ପାଣି ପିଆ ହେଲା ନାଇଁ । ପ୍ରାୟ ମାଇଲିଏ ଚାଲି ଗଲି । ବାଟରେ ଯେତେ ଖାଇବା ଦୋକାନ ସବୁଠି ପଚାରିଲି । ଥଣ୍ଡା ପିଅ ନୋହିଲେ ଗରମ ପିଅ । ପାଣି ମାଗ ନାଇଁ । ଅବଶ୍ୟ ପରେ ସ୍ୱତନ୍ତ୍ର ବରାଦ କଲାରୁ ଆମେରିକା କି ୟୁରୋପର କୋଉ ହ୍ରଦର ପାଣି ମତେ ପରଶା ଗଲା । କିନ୍ତୁ ପାଣିର ଏଇ

ହଟହଟା ମନରେ ରହିଗଲା ।

ଦ୍ୱିତୀୟ ଘଟଣା ଘଟିଲା ମୁଁ ଯେତେବେଳେ ମାଲୀ ଯାଇଥିଲି । ମାଲୀ ଯିବାତ ଖୁବ୍ ଲମ୍ୱା ଗପ । ତେବେ ପାଣି ପ୍ରସଙ୍ଗରେ ଯେତିକି କହିବା ଦରକାର ସେତିକି କହେ । ମାଲିଆନ ଏୟାର ଲାଇନ୍‌ସର ସେଇ ଉଡ଼ାଣରେ ମୁଁ ଏକମାତ୍ର ପ୍ରଥମ ଶ୍ରେଣୀର ଯାତ୍ରୀ । ମୋ ସାଙ୍ଗରେ ସେଇ ଏକା ସମ୍ମିଳନୀକୁ ଯାଉଥିବା ଇଉନେସ୍କୋ ବନ୍ଧୁମାନେ ମଧ ଇକନମି କ୍ଲାସରେ । ଭୋର ଚାରିଟା ବେଳୁ ଅପେକ୍ଷା କରି କରି ସକାଳ ଆଠଟାରେ ଆମେ ଉଡ଼ାଜାହାଜରେ ଉଠିଲୁ । ତଣ୍ଟି ଶୁଖି ଯାଉଚି । କେହିପାଏ ପାଣି ଦେବାକୁ କେହି ନାହିଁ । ଗାଡ଼ିରେ ଚଢ଼ିଲା ସାଙ୍ଗେ ସାଙ୍ଗେ ଚିକ୍କଣ କଳା, ଅପୂର୍ବ ଗଢ଼ଣ ଯୋଉ ଗଗନସଖୀ ଅଭିବାଦନ କଲା, ତାକୁ ଦେଖି ଭୋକ ଶୋଷ ଯେମିତି କେତେ ଗୁଣ ବଢ଼ିଗଲା । ମୁଁ ତାକୁ କହିଲି, ଯଦି ଶୀଘ୍ର କିଛି ପିଇବା ପାଣି ଆଉ ଖାଇବା ଜଳଖିଆ ସିଏ ନ ପରଶେ ତେବେ ଭୋକ ଦାଉରେ ମୁଁ ତାକୁ ଖାଇଦେବା ଅସମ୍ଭବ ନୁହେଁ । ସେ ହସର ଫୁଲ ବଗିଚା ଫୁଟାଇ କହିଲା, ତମେ ଭାଗ୍ୟବାନ । ତମେ ପ୍ରଥମ ଶ୍ରେଣୀ ଯାତ୍ରୀ । ଏକମାତ୍ର ତମେ ଜଳଖିଆ ପାଇବ । ଅନ୍ୟମାନଙ୍କୁ ଲଞ୍ଚଯାଏ ଅପେକ୍ଷା କରିବାକୁ ପଡ଼ିବ । ମନ ଖରାପ ଲାଗିଲେ ବି ଉପାୟ ନାହିଁ । ମୁଁ ଜଳଖିଆ ଖାଇ ପାଣି ପିଇ ଘେରାଏ ବୁଲି ଆସିଲି । ମୋ ଜାଗାରେ ଯେମିତି ବସିଚି ଆଖି ଲାଗିଗଲା । ଘଣ୍ଟାଏ ଖଣ୍ଡେ ନିଦରେ ଶୋଇ ଯାଇଚି । ଟିକିଏ ଶୋଷ ହେଉଚି । ପାଣି ମାଗିଲି । ଅଧଘଣ୍ଟାପରେ ଆସିଲା । ଗୋଟିଏ ଢ଼ୋକରେ ସେତକ ଶେଷ । ଝରକା ବାଟେ ତଳକୁ ଚାହିଁଲି । ସାହାରା ମରୁଭୂମି ଉପରେ ଆମେ ଉଡୁଚୁ । ଶୋଷ ସତେ ଯେମିତି ବଢ଼ିଗଲା । ମୁଁ ପାଣି ମାଗିଲି । ଝିଅଟି କହିଲା ମୁଁ ଆପଣଙ୍କ ପାଇଁ ଲଞ୍ଚ ବେଳକୁ ଗ୍ଲାସେ ପାଣି ରଖୁଛି । ଆମର ପାଣି କମ୍ ହୋଇ ଯାଇଛି । ମୁଁ ମନେ ମନେ ଭାବିଲି ଭୋକରେ ନିଶ୍ଚୟ ଅନ୍ୟ ଯାତ୍ରୀମାନେ ପାଣିତକ ପିଇ ଯାଇଛନ୍ତି । କଣ କରିବି ଭାବୁଚି । ଝିଅଟି ଚାରୋଟି ସାନ ସାନ ସୋଡ଼ା ବୋତଲ ପରି ବୋତଲ ଦେଇଗଲା । କହିଲା ଏଇଆକୁ ପିଇ ଶୋଷ ମେଣ୍ଟାନ୍ତୁ । ମୁଁ ସାଙ୍ଗେ ସାଙ୍ଗେ ଗୋଟିଏ ଖୋଲି ପିଇଗଲି । ପାଟିକି ସୁଆଦ । ପେଟ ଦିହ ସତେ ଯେମିତି ଗରମ ତାତିରେ ଶୁଖି ଯାଉଚି । ମୁଁ ଦ୍ୱିତୀୟ ବୋତଲ ଖୋଲି ପିଇଲି । ଏଥର ଯେମିତି ମୋର ନିଃଶ୍ୱାସ ବନ୍ଦ ହୋଇ ଆସୁଚି । ଆଖିକି ଟିକିଏ ଝାପ୍‌ସା ଦିଶୁଚି । ଗୋଟାଏ ପ୍ରକାର ନିର୍ବେଦ ଭାବ ଦିହସାରା ଘୋଟି ଯାଉଚି । ଦିହର ପ୍ରତ୍ୟେକ ତନ୍ତୁ ଡ଼ାକ ଛାଡ଼ିଛି ପାଣି । ସତେ ଯେମିତି ମୋର ନିଜ ଉପରୁ ସବୁ ଅକ୍ତିଆର ଚାଲି ଯାଇଚି । ମୁଁ ତୃତୀୟଟି ଖୋଲି ପିଇଗଲି । ତା ପରେ ମୋର ଆଉ ଚେତା ନାହିଁ । ଝିଅ ଡ଼ାକରେ ନିଦ ଭାଙ୍ଗିଲା । ସାମନାରେ ସେଇ ହସ । ହାତରେ ଖାଇବା ଥାଳି । ତା କଡ଼ରେ ଗ୍ଲାସେ ପାଣି । ମୁଁ ପାଣି ଗ୍ଲାସକ ଢ଼କ ଢ଼କ କରି ପିଇଗଲି । ତା ପରେ ବେଶ୍ କିଛି ଖାଇଲି । ଭୋକ ହେଉଥିଲା । ସାନ ବୋତଲ ଦେଖିଲି । ଏ ଗୁଡ଼ିକ ସାମ୍ପେନ । ଏତେ ସାନ ବୋତଲରେ କେବଳ ସୋଡ଼ା କିମ୍ବା କୋଲା ଥିବାର ମୁଁ ଦେଖିଚି ।

ସାମ୍ନେନ ଦେଖି ନାଇଁ । ସେଇଥି ପାଇଁ ଏ ଧୋକା । ଯାହା ହେଉ ଆଉ ଗ୍ଲାସେ ପାଣି ନ ହେଲେ ନ ହୁଏ । ସେ ଝିଅଟି ଗୋଟେ ବଡ଼ ଗ୍ଲାସରେ ଗ୍ଲାସେ ଅପୂର୍ବ ରଙ୍ଗର ପିଇବା ପାଣି ସାମ୍ନାରେ ରଖିଲା । କହିଲା, ଆମ ଜାହାଜରେ ଏଇ ଏକମାତ୍ର ତରଳ ଜିନିଷ ଅଛି । ଇଏ ହେଉଚି ଜନି ଓ୍ୱାକର । ନିଟ୍ । ମୋର ତାକୁ ଦେଖି ମୂର୍ଚ୍ଛା ହେବାର ଉପକ୍ରମ । ମୁଁ ନିଶ୍ଚୟ ଟିକେ ଉଚ୍ଚ ଗଳାରେ କହିଥିବି । ଉଠା, ଉଠା, ଇଏ ବିଷ । ଏକୁ ପିଇଲେ ମରଣ ସୁନିଶ୍ଚିତ । ଝିଅଟି କିଛି ସମୟ ଅବାକ୍ ହୋଇ ମତେ ଚାହିଁଲା ଆଉ ଧୀରେ ଧୀରେ ଗ୍ଲାସଟି ଉଠାଇ ନେଲା ।



# ଚଟି

'ଚଟୁଳ ଚଟି ରଞ୍ଜିତ ଚରଣା' କିଏ ଲେଖିଥିଲେ କେଜାଣି, ଏହାଠାରୁ ବଳି ଚଟିର ସୌଭାଗ୍ୟ ବର୍ଣ୍ଣନା ଆଜିଯାଏ ମୋ ଆଖିରେ ପଡ଼ିନାଇଁ । କୋଟିପତି ଠାରୁ ଆରମ୍ଭ କରି ଭିକାରୀ ଯାଏ କିଏ ବା ଚଟି ନ ପିନ୍ଧୁଚି ? କିନ୍ତୁ କେଉଁ ଛଇଳୀର ଚରଣକୁ ରଞ୍ଜିତ କରି ଚଟି କବି ମନକୁ ଏମିତି ଉଲୁସେଇଲା ଯାହା ଫଳରେ ଆମକୁ ଏପରି ଗୋଟିଏ ଚରଣ ମିଳିଲା ତାହାହିଁ ଭାବିବାର କଥା । ମିଳିବ ନାଇଁ କାହିଁକି ? କବି ମାନସିଂହଙ୍କ ଭାଷାରେ ଗାଧୋଇ ଯାଉଥିବା କେଉଁ ତରୁଣୀର 'ଲାକ୍ଷାରକ୍ତ ପଦ ରଞ୍ଜି' ଲାଗି ଯଦି ଗାଧୁଆ ତୁଠ ପଥରର ଦିହ ଉଲୁସୀ ଅମର ହୋଇ ପାରିଲା, ତେବେ ଚଟିର ସୌଭାଗ୍ୟରେ ଆପଣଙ୍କର ବିଚଳିତ ହେବାର କାରଣ କଣ ଅଛି ?

ଏଇ ଚଟି କିଛି କମ ନୁହେଁ । ଯୋଗୀ ମନକୁ ଭଳେଇବା ଚଟିର ବାଁ ହାତର ଖେଳ । ମୁଁ ଚଟି ଚରଣାଙ୍କ କଥା କହୁନାଇଁ । ଆଠଶହ ବର୍ଷ ତଳେ ବୀରଶୈବ ସନ୍ଥ ବସବାଣ୍ଣା ଲେଖିଥିଲେ, ଯେଉଁମାନେ ଦେଉଳ ଦୁଆରେ ଚଟିରେ ମନରଖି ଶିବ ମନ୍ଦିରକୁ ଯାଆନ୍ତି, ସେମାନେ ଶିବଙ୍କୁ ଦେଖନ୍ତି ନାହିଁ । ଆପଣା ଚଟିକୁ ଦେଖନ୍ତି । ୟାର ବି ନଜିର ଅଛି । ଯେଉଁ ବୁଢ଼ି ରଥରେ ବସିଥିବା ଜଗନ୍ନାଥଙ୍କୁ ଚାହିଁ ଆପଣା କାକୁଡ଼ି ବୁଦା ଦେଖିଥିଲା, ସିଏ ବସବାଣ୍ଣା ବଚନର ବଡ଼ ପ୍ରମାଣ ।

ରେଙ୍ଗୁନରେ ଯେତେବେଳେ ମୁଁ ବୁଦ୍ଧ ମନ୍ଦିରକୁ ଯାଇଥିଲି, ଦେଖିଲି ସମସ୍ତେ ଆପଣା ଆପଣା ଯୋତା ଚଟି ହାତରେ ଧରି ସିଧା ମୂର୍ତ୍ତି ସାମନାକୁ ଯାଉଛନ୍ତି । ଆପଣା ଅପଣା ଯୋତା ଚଟିକୁ ପାଖରେ ଥୋଇ ବୁଦ୍ଧଙ୍କୁ ପ୍ରଣାମ କରି ପୁଣି ଯୋତା ଚଟି ଧରି ବାହାରକୁ ଆସୁଛନ୍ତି । ଆଜିକାଲି ଯେମିତି ଆମ ଦେଉଳରେ ବହୁ ଲୋକଙ୍କୁ, ବିଶେଷ କରି ପାଠପଢୁଆ ଅଧିକାରୀବର୍ଗଙ୍କୁ ଠିଆ ମୁଣ୍ଡିଆ ପକେଇ ଆସିବାର ଦେଖା ଯାଉଛି, ଆଜିକି ପ୍ରାୟ ତିରିଶି

ବର୍ଷ ତଳେ ସେଇ ବୁଦ୍ଧ ମନ୍ଦିରରେ ତାର ନମୁନା ଦେଖିଥିଲି । ଜଣେ ଚଟି ସମେତ ଠିଆ ମୁଣ୍ଡିଆଟିଏ ବୁଦ୍ଧଙ୍କ ଆଡ଼କୁ ଫୋପାଡ଼ି ବାହାରି ଯିବାର ଦେଖି ସେତେବେଳେ ମତେ ହସ ଲାଗିଥିଲା ।

ଯାର କେତେବର୍ଷ ପରର କଥା । ଶାନ୍ତିନିକେତନର କେତେକ ବନ୍ଧୁଙ୍କ ସାଙ୍ଗରେ କେନ୍ଦୁଲି ମେଳା ଦେଖିବାକୁ ଯାଇଛି । ସାଙ୍ଗରେ ଜଣେ ୟୁହୁଦୀ ଭଦ୍ରମହିଳା । ଶାନ୍ତିନିକେତନର ଅତିଥି । ଦେଉଳ ମୁହଁରେ ଚଟି ଓହ୍ଲେଇ କ'ଣ କରିବା, କୋଉଠି ରଖିବା ମସ୍ତୁଧା ଗଲିଚି । ହଠାତ୍ ତଳକୁ ଚାହିଁ ଦେଖେ ମୋ ଚଟି ଉଭେଇ ଯାଇଚି । ମୋ ମୁହଁରେ ଅତି ବ୍ୟସ୍ତଭାବ ଦେଖି ଭଦ୍ରମହିଳା ଖିଲିଖିଲି ହୋଇ ହସିଲେ । ତାଙ୍କ ଚମଡ଼ା ହାତମୁଣା ଭିତରେ ମୋ ଚଟି ଆଶ୍ରୟ ପାଇଚି । ତାଙ୍କ ଦେଖାଦେଖି ଯେଝା ଝୁଲାମୁଣାରେ ଆପଣା ଆପଣା ଯୋଡା ଚଟି ପୁରେଇବାରୁ ଆମେ ସମସ୍ତେ ଚାରିଆଡ଼ ବୁଲି ଦେଖିଲୁ । କିନ୍ତୁ ଏଇ ଘଟଣାଟି ଏ ପର୍ଯ୍ୟନ୍ତ ମୋ ମନରେ ରେଖାପାତ କରିଚି । ମୋ ଚଟି ତାଙ୍କ ସ୍ନୋ ପାଉଡ଼ର ସ୍ପର୍ଶରେ ଆସିଲା ବୋଲି ନୁହେଁ । ବିଦେଶୀନୀଙ୍କର ଶାନ୍ତିନିକେତନ ପ୍ରତି ଶ୍ରଦ୍ଧା ଦେଖି । ମୁଁ ଶାନ୍ତିନିକେତନର ଯୁବକ ମାଷ୍ଟ୍ର । ମୋ ଖାତିର ବୁଢ଼ାମାଷ୍ଟରଙ୍କଠୁ କମ ନୁହେଁ । କେତେ ବା ଆଦର୍ଶବାଦୀ ଯୁବକ ମାଷ୍ଟ୍ର ଅଛନ୍ତି ? ପୁଣି ବିଦେଶୀ ସ୍ତ୍ରୀଲୋକ ହୋଇ ମଧ ଚଟି ଯୋଡା ପ୍ରତି ଛିଙ୍କାର ନାହିଁ ଏଇଟା ମତେ ବେଶି ଭଲ ଲାଗିଥିଲା । ଇସ୍ରାଏଲ ସାମ୍ୟବାଦ ବିଷୟରେ ଯାହା ପଢ଼ିଥିଲି, ଏଇଟି ତାର ପ୍ରତ୍ୟକ୍ଷ ଉଦାହରଣ ବୋଲି ସେତେବେଳେ ମନେ ହୋଇଥିଲା ।

ଦକ୍ଷିଣ ଭାରତର ଅନେକ ମନ୍ଦିରରେ ଠାକୁରଙ୍କର ବଡ଼ ବଡ଼ ଚଟି ରଖା ଯାଇଥିବାର ଦେଖାଯାଏ । ଯେଉଁମାନେ ଠାକୁରଙ୍କ ଗୋଡ଼ ମାପ ଅନ୍ଦାଜ କରି ଏ ସବୁ ଚଟି ତିଆରି କରିଛନ୍ତି ସେମାନଙ୍କୁ ଧନ୍ୟ କହିବା ମନେ ପଡ଼ିଗଲା ଜଣଙ୍କର ଚଟି କିଣିବା କଥା । ଭଦ୍ରଲୋକ ବାଟା ଚଟି କିଣିବାକୁ ଗଲେ । ଦୋକାନୀ କହିଲା, ଗୋଡ଼ ବଢ଼ାନ୍ତୁ, ନମ୍ବର ମାପି ଦେଖେ । ଭଦ୍ରଲୋକ ପଚାରିଲେ ନମ୍ବର ପୁଣି କଣ ? ଦୋକାନୀ କହିଲା ଆଜ୍ଞା ତିନି ନମ୍ବରରୁ ଆରମ୍ଭ କରି ୧୧ ନମ୍ବର ଯାଏ ଭିନ୍ନ ଭିନ୍ନ ମାପର ପାଦ ପାଇଁ ଚଟି ମହଜୁଦ ଅଛି । ଭଦ୍ରଲୋକ ପଚାରିଲେ, ଦାମ କଣ ମାପ ଅନୁପାତରେ ? ଉତ୍ତର ମିଳିଲା, ନାହିଁ ଆଜ୍ଞା, ତିନିରୁ ପାଞ୍ଚ ଯାଏ ଗୋଟିଏ ଦାମ୍ ଆଉ ଛରୁ ଏଗାର ଯାଏ ଗୋଟିଏ ଦାମ୍ । ତେବେ ମତେ ୧୧ ନମ୍ବର ଦିଅନ୍ତୁ । ଘରେ ସ୍ତ୍ରୀ ପଚାରିଲେ, କିଓ, ଏଡ଼େ ଏଡ଼େ ଚଟି କାହାପାଇଁ ଆଣିଚ ? ଭଦ୍ରଲୋକ ଜବାବ ଦେଲେ । କଣ ମୋତେ ବୋକା ବୁଝିଚ ? ଏକା ପଇସା ଯେତେବେଳେ ସାନ କାହିଁକି ଆଣିଥାନ୍ତି ?

ଶୁଣିଚି କୋଉ ଗୋଟିଏ ଦେଉଳ ଆଗରେ ଧାତୁ ତିଆରି ଯୋଡ଼ିଏ ବଡ଼ ଚଟି ରଖା ହୋଇଚି । ବାଟରେ ଚାଲିଯାଉଥିବା ଲୋକେ ତାକୁ ଛୁଇଁ ମୁଣ୍ଡିଆ ମାରି ଯାଆନ୍ତି । ଗୋଟିଏ

ମତରେ ଠାକୁର ଏଇ ଚଟି ପିନ୍ଧି ପ୍ରତିଦିନ ତାଙ୍କ ଅଞ୍ଚଳ ପହରା ଦିଅନ୍ତୁ ଏଇଥିପାଇଁ ପ୍ରାର୍ଥନା କରିବାକୁ ଏ ବ୍ୟବସ୍ଥା କରାଯାଇଚି । ଅନ୍ୟମତରେ ଭୂତ କି ଡ଼ାହାଣୀ ତାଙ୍କ ଅଞ୍ଚଳକୁ ନ ଆସନ୍ତୁ, ସେଥିପାଇଁ ତାଙ୍କ ଚଟି ଛୁଇଁ ନିବେଦନ କରିବାକୁ ଏ ବ୍ୟବସ୍ଥା । ଭଗବାନ ହେଉନ୍ତୁ କି ସଇତାନ ହେଉ, ଉଭୟଙ୍କ ଗୋଡ଼ର ମାପ ଯେଉଁମାନେ କଳ୍ପନା କରିଛନ୍ତି ତାଙ୍କ କଳ୍ପନା ଶକ୍ତିର ବାହାଦୂରୀ । ମୂର୍ତ୍ତିପୂଜାରେ ବିଶ୍ୱାସ ନ କରୁଥିବା ଜଣେ ବ୍ରାହ୍ମଣ ପ୍ରଭୁଙ୍କର ଶ୍ରୀଚରଣ ବିଷୟରେ ଲେଖିଥିବାରୁ ଥରେ ପଣ୍ଡିତ ନୀଳକଣ୍ଠ ରହସ୍ୟ କରି 'ପ୍ରଭୁଙ୍କୁ ଦେଖିଲେ ଥରେ, ଖୁଣ୍ଟରେ ମୁ ବାନ୍ଧିବିରେ' କହିଥିବାର ମନେ ପଡୁଚି । ପ୍ରଭୁ ଯଦି, 'ଅପାଦ ପାଣି', ତାଙ୍କର ଚଟି ଆସିଲା କେଉଁଠୁ ?

କ'ଣ ଚଟି ଚାଲେ କି ? ଆଗେ । କିମ୍ବା ଚଟିଙ୍ଗ ? ଚଟିଚରଣାଙ୍କଠୁଁ ଆରମ୍ଭ କରି ଠାକୁରଙ୍କ ଚଟିରେ ପହଞ୍ଚିଲାଣି । କଥା ହେଉଚି, ଯଦି ଠାକୁରଙ୍କ ଚଟି ଏତେ ମାନ୍ୟ, ତେବେ ମଣିଷଙ୍କ ଚଟି ଏତେ ହୀନିମାନ କାହିଁକି ? ଏକଥା କହିଲାବେଳେ ଆପଣ ମନେ କରନ୍ତୁନାଇଁ ଯେ ଅନେକେ ରାଜା ମହାରାଜଙ୍କ ଚଟି ଯୋତା ବୋହିବା କିମ୍ବା କ୍ଷମତାବାଲା ଲୋକଙ୍କ ଚଟିମିଶା ପାଦକୁ କାନ୍ଧରେ ବୋହିବାକୁ ମର୍ଯ୍ୟାଦା ବିଚାରୁଥିବା କଥା ମୁଁ ଜାଣେ ନାଇଁ । ମୁଁ ଏମାନଙ୍କୁ ବ୍ୟତିକ୍ରମରେ ଗଣୁଚି । ଯେଉଁମାନେ ସାହେବ ମେମଙ୍କ ପରି ଯୋତା ଚଟି ପିନ୍ଧି ରୋଷେଇ ଘର କି ଠାକୁର ଘରକୁ ପଶନ୍ତି ସେମାନେ ମଧ ଏକ ପ୍ରକାର ବ୍ୟତିକ୍ରମ । ଆମ ଦେଶରେ କାଦୁଅ ଚକଟି, ଗୋବର, ଘୋଡ଼ା-ଗୁହ, କୁକୁର ମୁତ ଦଳି ସେଇ ଯୋତା କି ଚଟି ମାଡ଼ି ଘର ଭିତରେ ଚାଲବୁଲ କରିବା ଯେ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ଏତକ ତ ଅନ୍ତତଃ ବୁଝିବା ଦରକାର । ଜାପାନୀ ପରିବାରରେ ସେଥିପାଇଁ ପହଞ୍ଚିଲା ସାଙ୍ଗେ ସାଙ୍ଗେ ଘର ଭିତରେ ଚଳପ୍ରଚଳ ହେବାକୁ ସେମାନେ ସ୍ୱତନ୍ତ୍ର ଚଟି ଦିଅନ୍ତି ।

ଏଇ ଚଟି ଦେବା କଥାରୁ ରେଭେନ୍‌ଶା କଲେଜର କୋଉ ଝିଅ କୋଉ ଅଧାପକଙ୍କୁ ଚଟି ଦେବା କଥା ମନେ ପଡ଼ିଗଲା । ଜାପାନୀ ଅର୍ଥରେ ନୁହେଁ, ଚଟି ଦେବା ଅର୍ଥ ଚଟିରେ ସେକିବା । ରୁଟି ସେକିବା ପରି ଚଟି ସେକିବା ନୁହେଁ, ଚଟିରେ ଏମିତି ଚଟପଟ ପାହାର ପଡ଼ିଲା ଯେ କୁଆଡ଼େ ଗରମ ରୁଟି ପରି ଦିହ ଫୁଲିଗଲା, ନରମ ହୋଇଗଲା ଆଉ ତାତିଗଲା ।

ଚଟି ଚରିତ ଏପରି ଯେ ଶୁଣ ଶୁଭଦଂ ସୁଖଦଂ ଶ୍ରୁତିସାର । ଶୁଭଦଂ କାହିଁକିନା ସକାଳୁ ଚଟି ମୁହଁ ନ ଦେଖିଲେ ପାଇଖାନା ଯିବା ଅଶୁଦ୍ଧ । ପାଇଖାନା ବିଗିଡ଼ିଲେ ପେଟ ଖରାପ । ପେଟ ସବୁ ରୋଗର ମୂଳ । ଚଟି ମୁହଁ ଦେଖିଲେ, ପାଇଖାନାରୁ ଆରମ୍ଭକରି ଗାଧୁଆ ଯାଏ ସବୁ କାମ ସୁରୁଖୁରୁରେ ସରିଗଲେ ମନମିଜାଜ ଖୁସି । ଖୁସି ମନରେ ଯା କଲେ ତା ଶୁଭ । ସୁଖଦଂ କାହିଁକି ବୁଝେଇବା ଦରକାର ନାଇଁ । ଆପଣ ଆଖିବୁଜି ଚଟି ରଞ୍ଜିତ ଚରଣାଙ୍କର

ଧ୍ୟାନ କରନ୍ତୁ । ଗୋଦାବରୀଶ ମହାପାତ୍ରଙ୍କ 'ଦୁଇଟି ଚରଣ ଖାଲି-ବହେ ରଙ୍ଗିନୀ ଟଣା' ଭାବନ୍ତୁ । ତାଙ୍କ ଗୋଇଠିରେ ଅଳତା, ସାମନା ପଟେ ଖୋପରୁ ବାହାରିଥିବା ଆଙ୍ଗୁଠିର ମୁଦିଆ ଆଉ ଦୁଧ ଅଳତା ମିଶା ନଖ ରଙ୍ଗ ଦେଖି ନଖରୁ ଶିଖ ଯାଏ ବିଗାର କଲେ ଯା ସୁଖଦଂ ନୁହେଁ ଆଉ କଣ ? ଆଉ ଶ୍ରୁତିସାର ? ଆପଣ ଯଦି ଠିକ୍ ରସ ତର୍କଣା କରିଛନ୍ତି ତେବେ ଆପଣଙ୍କ କାନ ଭାଁ ଭାଁ କରିବ କି ନାହିଁ ?



# ମୋ ଜୀବନରେ ଚୋରୀ, ରାହାଜାନୀ

ଝିଅକୁ ଦେଖିବାକୁ ରାଞ୍ଚି ଯିବା ବାଟରେ କଲିକତାରେ ଉଡ଼ାଜାହାଜ ଘାଟୀରେ ରାତି କଟେଇବାକୁ ପଡ଼ିଲା । ମୋର ପାଟଣା ଯିବା କଥା ଥିଲା । ଦଇବ ଯୋଗକୁ ଯୋଉଁ ଭଦ୍ରଲୋକ ଘରେ ମୋ ସାଙ୍ଗେ ରାତ ବସେଇଲେ, ସିଏ ସେ ଅଞ୍ଚଳ ସହ ସୁପରିଚିତ । ମୁଁ ପଚାରିଲି, ରାଞ୍ଚିରୁ ପାଟଣା ଯିବାକୁ ସବୁଠୁ ଭଲ ବ୍ୟବସ୍ଥା କଣ ? ଭଦ୍ରଲୋକ କହିଲେ ସବୁଠୁ ଭଲ ହେଉଚି ରାତିପୁଆ ଡ଼ିଲକ୍ସ ବସରେ ଯିବା । ତେବେ ବାଟରେ ପ୍ରାୟ ଲୁଟପାଟ ହେଉଥିବାରୁ ଅଳ୍ପ ପଇସା ନେଇ ଯିବା ବୁଦ୍ଧିମାନର କାମ । ମୁଁ ଟିକିଏ ଥତମତ ହେଲି । ଇଏ କି ଉପଦେଶ । ଭଦ୍ରଲୋକ ଜାଣିଲା ପରି କହିଲେ, ଆପଣ ବ୍ୟସ୍ତ ହେବେ ନାହିଁ । କପାଳ ଥିଲେ ଆପଣ ପଇସା ବି ଫେରି ପାଇବେ, ଯେମିତି ହେଲା ଅଳ୍ପ କିଛିଦିନ ତଳେ । ରାଞ୍ଚି ପାଟଣା ବାଟରେ ବସ ଲୁଟ ହେଲା । କିନ୍ତୁ କିଛି ସମୟ ପରେ ଡ଼କେଇତ ମାନେ ପଇସା ଫେରେଇଦେଲେ । ସେମାନେ କହିଲେ ପୁଲିସ ଯେମିତି ଏ ସବୁ ନ ଜାଣେ । ଜଣେ ଯାତ୍ରୀ ଡ଼କେଇତଙ୍କର ଏପରି ଅନୁରୋଧ ଶୁଣି ପଚାରିଲେ, ତୁମେ ପୁଲିସକୁ ଏତେ ଡରୁଚ ? ଡ଼କେଇତ କହିଲେ ପ୍ରତିଥର ଲୁଟ ପାଇଁ ଆମକୁ ପୁଲିସକୁ ପାଞ୍ଚହଜାର ଦବାକୁ ହୁଏ । ଆପଣମାନେ ଖବର ଦେଲେ ମତେ ପକେଟରୁ ଦି ହଜାର ଦବାକୁ ହବ । ଆପଣମାନେ ପଇସା ଫେରସ୍ତ ନିଅନ୍ତୁ ଆଉ ମୁହଁ ବନ୍ଦ କରନ୍ତୁ ।

ଏ କଥା ସତ କି ମିଛ ଜାଣିବାର ବାଟ ନାହିଁ । ତେବେ ମୁଁ ରାଞ୍ଚିରେ ଯାହା ଶୁଣିଛି ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କଥା ହେଉଚି ବାଡ଼ ଯେବେ ଖେତ ଖାଏ, ରଖିବ କିଏ ?

ଏଇ କଥାରୁ କେତେ ହଜିଚି, କେତେ ହଜେଇଚି ମନକୁ ଆସିଲା । ମଣିଷ ନିରାପଦରେ ରହିବାକୁ ଯେତେ ଯେତେ ବ୍ୟବସ୍ଥା ଖଞ୍ଜୁଚି, ବିପଦ ଘଟେଇବା ଲୋକେ ସେତେ ସେତେ ନୂଆ ଫନ୍ଦି କାଢୁଛନ୍ତି, ସିଏ ଅସ୍ତ୍ରଶସ୍ତ୍ରରେ ହେଉ କି ଚୋରି ବନ୍ଦ କରିବା ଉପାୟ ଫାନ୍ଦିବାରେ ହେଉ । ୧୯୬୪ର କଥା । ମୁଁ ଶାନ୍ତିନିକେତନ ଛାଡ଼ି ପୁନା ଆସୁଥାଏ ।

କଥା ହେଲା, ମୋଟା ମୋଟା ଜିନିଷ ରେଳରେ ବୁକ୍ କରିଦେବା ଆଉ ଦାମୀ ଦାମୀ ଜିନିଷ ସାଙ୍ଗରେ ନବା । ଗାରୋଟି ବଡ଼ ଟିଣ ଟ୍ରଙ୍କରେ ମୋ ସ୍ତ୍ରୀଙ୍କ ବାହାଘର ଶାଢ଼ୀ, ମୋର ଆମେରିକା ପୋଷାକପତ୍ର ଆଉ ଦରକାରୀ ଇଲେକଟ୍ରି ଜିନିଷ ଥୋଇ ଭଲ ତାଲା ଲଗାଇ ଉପରେ ଲୁହା ପାତିଆ ଦେଇ ବାନ୍ଧି ଆମେ ଆମ ସାଙ୍ଗରେ ଯିବା ପାଇଁ ଓଜନ କରି ଷ୍ଟେସନରେ ରଖି ଆସିଲୁ । ତା ପରଦିନ ନିଶ୍ଚିତରେ ଗାଡ଼ି ଚଢ଼ି ପୁନାରେ ପହଞ୍ଚିଲୁ । କୁଲି ଜିନିଷ ପତ୍ର ଓହ୍ଲେଇଲେ । ଆମେ ଘରେ ପହଞ୍ଚିଲୁ । ଦେଖିଲା ବେଳକୁ ଦୁଇଟି ଟ୍ରଙ୍କ ହାଲୁକା ଲାଗୁଚି । ଉପରେ ଟିଣ ପାତ ବନ୍ଧେଇ, ବନ୍ଦତାଲା ଯେମିତି ଥିଲା ସେମିତି । ଅଥଚ ଭିତର ଜିନିଷ ନାହିଁ । ଧାଇଁଲି ରେଳ ଷ୍ଟେସନକୁ । ରେଳବାବୁ ମାନେ ମୋ ପରି ଆଶ୍ଚର୍ଯ୍ୟ ହେଲେ । ସହାନୁଭୂତି ବି ଦେଖେଇଲେ । ତା ପରେ ଏପରି ଜେରା ଆରମ୍ଭ କଲେ ଯେମିତି ମୁଁଇ ମୋ ଜିନିଷ ଚୋରି କରି ରେଳବାଇକୁ ବଦନାମ କରିବାକୁ ଚାହୁଁଚି । ଦେଖିଲି, ଯାହା ତ ଯିବାର ଯାଇଚି । ତା ଉପରେ ଅଧିକ ମନସ୍ତାପ ଡ଼ାକି ଆଣିବା କି ଲାଭ । ସ୍ତ୍ରୀଙ୍କି ବୁଝେଇଲି ସୁକିନ୍ଦା ରଜା ଦେଇଥିବା ସୁନାଜରି ବାହାଶାଢ଼ି କଥା ଭୁଲିଯାଅ । ସୁନା ସାଙ୍ଗରେ ମୋର ପଡ଼ିବା ଯୋଗ ନାହିଁ । ତା ଛଡ଼ା ମନେରଖ ଲକ୍ଷ୍ମୀ ଯେତେବେଳେ ଯାଆନ୍ତି ହାତୀଖିଆ କଇଁଥ ପରି ଯାଆନ୍ତି । ଏଇଟ ଉଦାହରଣ । ଶାଢ଼ି ନେଇଗଲେ କଣ କିଏ କପାଳ ତାଡ଼ି ନେଇଯିବ ? ସ୍ତ୍ରୀ ମାନିଗଲେ । ହେଲେ କିଛିଦିନ ଯାଏ ବନାରସୀ ଶାଢ଼ି ଆଉ ଓଡ଼ିଶୀ ପାଟମାନଙ୍କର ଶୋକ ମନଫଟେଇ ପଦାକୁ ବାହାରି ଆସୁଥିଲା । ସମୟକ୍ରମେ ସବୁ ଦିହସୁହା ହୋଇଗଲା ।

ଶାନ୍ତିନିକେତନ ପିଲାଙ୍କୁ ନେଇ ରାଜଗିର, ଗୟା ଆଦି ଯାଉଥାଉ । କଥାହେଲା, ପଇସା ଜଣକ ପାଖରେ ରଖିବା ନିରାପଦ ନୁହେଁ । ତେଣୁ ଭାଗ କରି ତିନି ଚାରିଜଣଙ୍କ ପାଖରେ ରହିବା ସ୍ଥିର ହେଲା । ଜଣକର ଉପରେ ଗୋଲାପ ଫୁଲ ମାର୍କା ଟିଣ ବାକ୍ସ । ଗାଡ଼ି ଖୁବ୍ ଭିଡ଼ ଥାଏ । ହେଲେ ବି ଏ ବାକ୍ସଟି ଏପରି ଭାବରେ ରଖା ହୋଇଥାଏ ଯେ ଆଖିବାହାର ହେବା ଅସମ୍ଭବ । ଲୋକେ ପ୍ରତି ଷ୍ଟେସନରେ ଯିବା ଆସିବା କରୁଥାନ୍ତି । ଆମ ସାଙ୍ଗ ଗୋଟିଏ ଷ୍ଟେସନରେ ପଇସା କାଢ଼ିବା ପାଇଁ ବାକ୍ସ ତଳକୁ ଆଣିଲେ । ଖୋଲି ଦେଖନ୍ତି ଭିତରେ ଖଣ୍ଡେ ଟେକଲିଆ ଆଉ କିଛି ଛିଣ୍ଡା କୋତରା-ଲୁଗା । କିଏ କେତେବେଳେ ଏକାପରି ବାକ୍ସଟିଏ ଯୋଗାଡ଼ କରି ବାକ୍ସ ବଦଳ କରି ଦେଇଚି । ଛ'ଶ ଟଙ୍କା ଗଲା । ହେଲେ ଏ ପ୍ରକାର ଚୋରିର ବାହାଦୁରୀ ବହୁଦିନ ଯାଏ ଆମର କଥା ହୋଇ ରହିଥିଲା । ସେତେବେଳେ ପିଲାଦିନର ଗୋଟିଏ କଥା ମନେ ପକେଇ ମୁଁ ହସି ହସେଇ ଥିଲି । କଟକରୁ ଆମ ଗାଁକୁ ତାଳଚେର ଗାଡ଼ି । ଦିନେ ରାତିରେ ମୁଁ ଆଉ ମୋ ଭିଣୋଇ ଛବିଭାଇ ସେଇ ଗାଡ଼ିରେ ଯାଉଥାଉ । କୌଣସି କାରଣରୁ ଗୋଟିଏ ଷ୍ଟେସନରେ ଗାଡ଼ି ବନ୍ଦ ହେଲା । ଆମେ ଫାଷ୍ଟ କ୍ଲାସରେ ଶୋଇଚୁ । ମୁଁ ତଳେ, ସିଏ ଉପରେ । ତାଙ୍କର ସଦ୍ୟ କିଣା ନୂଆ ଜୋତାହଳକ ମୋ ଗୋଡ଼ପଟକୁ ଥୁଆ ହୋଇଚି । ହଠାତ୍ କବାଟ ଫିଟିଲା । ଜଣେ ପେଣ୍ଟ ସାର୍ଟ ପିନ୍ଧା ବାବୁ

ଆସିଲେ । ଝାପ୍‌ସା ନିଦରେ ମତେ ଲାଗିଲା ସିଏ କଣ ଖୋଜୁଛନ୍ତି । ଯେତେବେଳେ ମନେହେଲା ଭଦ୍ରଲୋକ ଜୋତା ହଳକ ପିନ୍ଧି ବାହାରକୁ ଓହ୍ଲାଇଲେ ମୁଁ ଛବିଭାଇଙ୍କି ଡ଼ାକିଲି । ଭଦ୍ରଲୋକ ନିଶ୍ଚୟ ବହୁତ ବେଳୁ ନିଘା ରଖିଛନ୍ତି । ବର୍ତ୍ତମାନ ଅନ୍ୟ ଗୋଡ଼ରେ ଦେଖିଲେ ବି କେମିତି କହିବି ତୁମେ ମୋ ଜୋତା ପିନ୍ଧିଚ ? ସେଥର ଜିନିଷ ହଜେଇ ମୁଁ ଯେତେ ହସିଥିଲି ଏଥର ବି ଆମେ ସମସ୍ତେ ହସିଲୁ ।

କେତେକ ଏମିତି ସାନ ସାନ ଘଟଣା ଘଟିଚି । ତେବେ ଦୁଇଟି ଘଟଣା ମୋ ମନରେ ଏବେବି ଲାଖି ରହିଚି । ମୁଁ ମୋ ହାତ ବାକ୍‌ସଟି ଧରି ରେଳରେ ବସିଲି । ମୁଣ୍ଡ ଉପରେ ଥୋଇ ପୁରୁଣା ଅଭ୍ୟାସମତେ ଖଣ୍ଡେ ବହି ଧରି ମୁଁ ପରିବେଶକୁ ଭୁଲିଯାଇଚି । ହଠାତ୍ ମୋ ପାଖରେ ବସିଥିବା ଭଦ୍ରଲୋକ କହିଲେ ଆପଣଙ୍କ ବାକ୍ସ ଧରି ସେ ଲୋକଟି ଚାଲିଯାଉଚି । ଦିନ ବେଳ । ସତକୁ ସତ ଆମ ସମସ୍ତଙ୍କ ଆଖି ଆଗରେ ଗୋଟିଏ ଯୁବକ ମୋ ହାତବାକ୍ସ ଧରି ଧୀର ଗତିରେ ଚାଲିଚି । ମୁଁ ଦି ଡ଼ିଆଁରେ ଯାଇ ସେ ଲୋକକୁ ଧରିଲି । ସିଏ ଓଲଟି କିଛି ନ ଜାଣିଲା ପରି ମତେ ପଚାରିଲା କଥା କଣ ? ମୁଁ ଏତେ ରାଗିଗଲି ଯେ ତାକୁ ଗୋଟିଏ ଚାପୁଡ଼ା ଦେଲି । ମୋ ଜୀବନରେ କୌଣସି ବାହାର ଲୋକକୁ ଚାପୁଡ଼ା ମାରିବା ଏଇ ଏକମାତ୍ର ଉଦାହରଣ । ମୁଁ ମୋ ବାକ୍ସ ନେଇ ଫେରିବାକୁ ପାଦ ବଢ଼େଇଚି କି ନାହିଁ ଜଣେ ସର୍ଦ୍ଦାରଜୀ କହିଲେ ତାକୁ ମୋ ହାତରେ ଛାଡ଼ି ଦିଅନ୍ତୁ । ଆପଣଙ୍କ କପାଳ ଭଲ । ମଝିକବାଟ ଡ଼େଇଁ ଥିଲେ ଏମିତି ହାତବଦଳ ହୋଇଥାନ୍ତା ଆପଣ ଆଉ ବାକ୍ସ ମୁହଁ ଦେଖି ନ ଥାନ୍ତେ । ମୁଁ ଛାଡ଼ିଦେଇ ସ୍ୱସ୍ତିର ନିଃଶ୍ୱାସ ନେଲି ।

ଆଉ ଦିନକର କଥା । ରେଳରେ ଦିଲ୍ଲୀ ଆଡ଼କୁ ଯାଉଥାଏ । ଆମ ଚାରିଜଣିଆ ଫାଷ୍ଟକ୍ଲାସ ପାଖକୁ ଲାଗିଥିବା ବଗିରେ ନୂଆ ବାହା ହେଇଥିବା ସ୍ୱାମୀ ସ୍ତ୍ରୀ ଉଠିଲେ । ଝିଅଟି ସୁନ୍ଦରୀ । ସୁନା ଗହଣାରେ ଦିହ ଛାଇ ହେଇଚି । ମଧ୍ୟପ୍ରଦେଶର ଗୋଟିଏ ଷ୍ଟେସନ ବାହାରେ ହଠାତ୍ ଗାଡ଼ି ବନ୍ଦ ହେଲା । ପାଖ ଡ଼ବାରୁ ଚିତ୍କାର, ସାହାଯ୍ୟ ପାଇଁ ଡ଼ାକ । ପଳେଇଲା ପଳେଇଲା ରଡ଼ି । କେହି ଆପଣା ଡ଼ବାରୁ ବାହାରିବାକୁ ନାରାଜ । ଚାରିଆଡ଼ ଅନ୍ଧାର । ବହୁ କଷ୍ଟରେ ଆମ ଡ଼ବାରୁ ଜଣକୁ ରାଜି କରେଇ ମୁଁ ପଦାକୁ ବାହାରିଲି । ଆଲୁଅ ସୁଇଚ୍ ପାଖକୁ ଯାଇ ସୁଇଚ୍ ଅନ କରିବାରେ ଡ଼ବାରେ ଆଲୁଅ ଜଳିଲା । ଲୋକେ ବାହାରିଲେ । ଚୋର ଆଲୁଅ ସୁଇଚ୍ ଅଫ କରି ଆମ ପାଖ ଡ଼ବା କୌଶଳକ୍ରମେ ଖୋଲି ସବୁ ସୁନା ଗହଣା ଛୁରୀ ଦେଖାଇ ଉତାରି ନେଇ ଚମ୍ପଟ । ବିଚାରି ଝିଅଟି ସନ୍ତ୍ରସ୍ତ । ଲୋକେ କିଏ ବାହାର ଅନ୍ଧାରକୁ ଚାହିଁ ବୀରତ୍ୱ ଦେଖାଉଛନ୍ତି ତ କିଏ ସମବେଦନା ଜଣାଉଛନ୍ତି । କିଏ ବା ଚୋରର କୌଶଳକୁ ତାରିଫ କରୁଛନ୍ତି । ମୁଁ ଟଳକୁ ଖୋଜି ଖୋଜି ଘରଠାରୁ ଦୁଆର ମୁହଁଯାଏ ଗଲି । ଦୁଇଟି

ସୁନା ଚୁଡ଼ି ଆଉ ପଟେ କାନ ଗହଣା ମିଳିଲା । ସମ୍ଭବତଃ ତରତର ହୋଇ ଡ଼େଇଁ ପଳେଇଲା ବେଳକୁ ପଡ଼ିଯାଇଚି । ସେତେବେଳକୁ ରେଳ ଷ୍ଟେସନରେ ପହଞ୍ଚି ଗଲାଣି । ପରିବାରଟି ସେଗଠି ଓହ୍ଲେଇବା ସିଦ୍ଧାନ୍ତ ନେଲେଣି । ମୁଁ ଯେତେବେଳେ ଏଇ ଗହଣା ଝିଅହାତକୁ ଦିଏ, ତାର ସେଇ ମୁହୂର୍ତ୍ତକର କୃତଜ୍ଞତା ମିଶା ଆନନ୍ଦ ଦୃଷ୍ଟି ଭୁଲିବାର ନୁହେଁ ।



# ମୁଁ ଯୋଉଦିନ ସେ ଝିଅ ଉପରେ ରାଗିଲି

ଝିଅ କଥା ପଡ଼ିଲା ମାତ୍ରେ ଅଧିକାଂଶ ପୁରୁଷ ସ୍ତ୍ରୀ ବ୍ୟାପାର ବୋଲି ଧରି ନିଅନ୍ତି । ଝିଅଙ୍କ ସହିତ ଯେ ଅଲଗା ସଂପର୍କ ସମ୍ଭବ ଏକଥା ଗ୍ରହଣ କରିବାକୁ ଅନେକେ ପ୍ରସ୍ତୁତ ନୁହଁନ୍ତି ।

ଝିଅଙ୍କ କଥାରୁ ମୁଁ ପ୍ରଥମେ ଗାଳି କଥାକୁ ଆସେ । ଓଡ଼ିଆରେ କଥା ଅଛି, ଥଟ୍ଟା କରିବାକୁ ଶାଳୀ, କହିଲେ ଯେବେ ସହେ । କବିସୂର୍ଯ୍ୟ କହିଛନ୍ତି, 'ବିକେ କିଣେ ଯେ ଯାହାକୁ ସ୍ନେହେ, ବଳ ତାହାଠାରେ ସିନା ସହେ ।' ସ୍ନେହ ସଂପର୍କ ନ ଥିଲେ ଥଟ୍ଟା ଗାଳିର ସଂପର୍କ ଯେ ଅସମ୍ଭବ ଏ କଥା ବିସ୍ତାର କରି କହିବା ପ୍ରୟୋଜନ ନାହିଁ ।

ଏଥିରୁ ଆପଣ ଧରି ନିଅନ୍ତୁ ନାହିଁ ଯେ ଯୋଉ ଝିଅ ଉପରେ ମୁଁ ରାଗିଲି ତା ସହିତ ମୋର ସ୍ନେହ ସଂପର୍କ ଥିଲା । ମୁଁ ଏକଥା ସ୍ୱୀକାର କରିବାକୁ ରାଜି ଯେ ସୁଯୋଗ ଘଟିଥିଲେ ଏପରି ଏକ ଝିଅ ସହିତ ସ୍ନେହ ସମ୍ପର୍କ ପ୍ରତିଷ୍ଠା ପାଇଁ ମୁଁ ଆଗେଇ ଯାଇଥାନ୍ତି । ସମ୍ଭବତଃ ଏଇଥିପାଇଁ ମୁଁ ତା ଉପରେ ରାଗିଲି ।

ସେଦିନ ଆମେ ଦିହେଁ କ୍ଲାନ୍ତ ହୋଇ ଯେଝା କାମରୁ ଫେରିଥାଉ । ଆମେ ଯେ ଏକାଠି ଫେରୁ ଜଣାଥିଲେ ବି ମତଲବୀ ବ୍ୟବସ୍ଥା ନୁହେଁ । କିନ୍ତୁ ଯେମିତି ରେଳ ଷ୍ଟେସନରେ ଦେଖା ହେଲା, ସେ ଯେମିତି ମତେ କହିବାକୁ ଚାହେଁ ଯେ ତା ଅସୁବିଧା ପାଇଁ ମୁଁ ଦାୟୀ । ଷ୍ଟେସନ ଥଣ୍ଡା ହେଉ କି ଗରମ ହେଉ ମୋ ଦୋଷ । ମୁଁ ତା ଭବିଷ୍ୟତ ଉନ୍ନତି ବ୍ୟବସ୍ଥା ନ କରିଥିଲେ ଆଉ ଏପରି ଏକ ଯାଗାକୁ ଯିବାର ସୁଯୋଗ ଦେଇ ନ ଥିଲେ ଏପରି ଅବ୍ୟବସ୍ଥାରେ ଆମକୁ ପଡ଼ିବାକୁ ପଡ଼ି ନ ଥାନ୍ତା ।

ଆମେ ଗନ୍ତବ୍ୟ ସ୍ଥାନରେ ପହଞ୍ଚିଲୁ । ଗାଡ଼ି ମିଳିଲା ନାଇଁ ମୋ ଦୋଷ । ଗାଡ଼ି ବେଶୀ ପଇସା ଦାବୀ କଲା ମୋ ଦୋଷ, ମୁଁ ପଇସା କମାଇବାକୁ ତର୍କ କଲି ମୋ ଦୋଷ । ଗାଡ଼ି ଆମକୁ ଭୁଲ ଜାଗାରେ ପହଞ୍ଚେଇ ଦେଲା ମୋ ଦୋଷ । ସେଠୁ ବାହାରିବାକୁ ଗାଡ଼ି ମିଳିଲା ନାଇଁ ତା ବି ମୋ ଦୋଷ । ଏଇ ଭଙ୍ଗୀର ତାତ୍ପର୍ଯ୍ୟ ଚା ଖାଇବାକୁ ଜିନିଷ ପତ୍ର ଦାୟିତ୍ୱ ନିଅ ଝିଅ ଦାୟିତ୍ୱ ସାଙ୍ଗକୁ ।

ସେଦିନ ସଞ୍ଜକୁ ଆମକୁ ଚା ଖାଇବାକୁ ଆମ ଆତିଥେୟଙ୍କ ଘରକୁ ଯିବାର ଥିଲା । ପାଞ୍ଚଟା ବେଳେ ଉଠି ଝିଅ ଗାଧୋଇବାକୁ ଗଲା । ଦି ପ୍ରକାର ସାବୁନ, ତିନି ପ୍ରକାର ତେଲ । ତା ପରେ ପୋଛାପୋଛି ହୋଇ ପହିଲେ କାଞ୍ଚୁଲି, ତା ପରେ ବ୍ଲାଉଜ, ତା ପରେ ପଗପଗ ଗାର ପଡ଼ିଥିବା ବାଘୁଆ ଗଞ୍ଜି ତା ଉପରେ ପୁଣି ପତଳା ସ୍ୱେଟର । ଆଉ ତା ପରେ ଗଭର୍ଣ୍ଣରଙ୍କୁ ଭେଟିବା ପରି ସାଜ । ଝିଅଟି ଏକୋଇଶ ଥର ପାନିଆ ବୁଲେଇ ମୁଣ୍ଡ କୁଣ୍ଡେଇବା ପରେ ଯେତେବେଳେ ମୋ ଆଡ଼କୁ ଆଡ଼ ଚାହିଁଲା, ମୋ କଥା ବିଚାରନ୍ତୁ । ପ୍ରଥମେ କ୍ରିମ, ତା ଉପରେ ପାଉଡ଼ର, ନଖରେ ରଙ୍ଗ ଆଉ ଓଠକୁ ସ୍ୱାଭାବିକ ରଙ୍ଗ । ତା ପରେ ବ୍ଲାଉଜ ଭିତରେ ଦି ଚାରିଟୋପା ଇଭିନିଂ ଇନ ପ୍ୟାରିସ୍ । ଏ ସବୁ କଲା ବେଳକୁ ଅଧଘଣ୍ଟାଏ ଡ଼େରି ହେଲାଣି ।

ପ୍ଲାଷ୍ଟିକ ମୁଣିରୁ ଜୋତା ମୋଜା ବାହାରିଲା—ଝାଡ଼ିଝୁଡ଼ି ଜୋତା ମୋଜା ପିନ୍ଧି ସାରିଲା ପରେ ପୁଣି କ୍ରିମ ଦେଇ ହାତ ସଫା । ଭାବିଲି ଏଥର ସରିଲା । ନାଁ, ବାହାରକୁ ଯିବା ଓଭରକୋଟ ଯେ ଏ ଯାଏ ପିନ୍ଧା ହୋଇନି । ମୁଁ ଦି ତିନି ଥର ବାହାର ଭିତର ହୋଇ ସାରିଲିଣି । ଅନ୍ୟ ବନ୍ଧୁମାନେ ଅପେକ୍ଷା କରୁଛନ୍ତି । କରନ୍ତୁ । କାଳ ତ ନିରବଧି । ସୃଷ୍ଟି ଆରମ୍ଭରୁ ସଭିଏଁ ଝିଅଙ୍କୁ ଅପେକ୍ଷା କରିଛନ୍ତି । ମୁଁ ପୁଣି ଭିତରକୁ ଗଲି । ଚାରିକଣିଆ ସିଲ୍କ ସ୍କାର୍ଫ ଗୋଟିଏ କଣରୁ ଭଙ୍ଗାହୋଇ ମୁଣ୍ଡରେ ବାନ୍ଧିବା ଉଦ୍‌ଯୋଗ ପର୍ବ ଚାଲିଚି । ଚାଏ ଉଦ୍‌ଯୋଗ ନା ସମାପ୍ତି ?

ହାତ ତାଲା ଚାବି ଆଡ଼କୁ ଗଲା । ମୁଁ ଦୁଆର ଆଡ଼କୁ ପାଦ ବଢ଼ାଇଲି । ଝିଅଟି ତାଲା ନ ଉଠେଇ ଧୀରେ ଆପଣା ବ୍ୟାଗ ଭିତରୁ ଚାରି ଚଉତା ରୁମାଲଟିଏ ବାହାର କରି ହାଲୁକା ଭାବରେ ମୁହଁ ଉପରେ ବୁଲେଇ ନେଲା । ସେଇଟି ପକେଟରେ ରଖି ଯେତେବେଳେ ଘର ବାହାରକୁ ପାଦ ବଢ଼ାଇଲା, ବାହାରେ ଆମକୁ ନିମନ୍ତ୍ରଣ କରିଥିବା ବନ୍ଧୁ ଛିଡ଼ା ହୋଇଛନ୍ତି । ଚା ଖିଆବେଳ ଗଡ଼ିଗଲାଣି । ରାତିଖିଆ ନୋହିଲେ ରକ୍ଷା, ଏମିତି ଭାବ ।

ଆପଣ ଭାବୁଥିବେ, ମୁଁ ଏ ସବୁ ପରିଧାନ କ୍ରମରେ ଦ୍ରଷ୍ଟା ହେବାର ସୁଯୋଗ ପାଇଲି କେମିତି ? ପ୍ରକୃତରେ ମୁଁ ଶେଷ ଅଂଶର ଦ୍ରଷ୍ଟା । ବାକିତକ ସମୟକୁ ଧରି କାଳ୍ପନିକ ପୁନର୍ଗଠନ । ସେଇଥିପାଇଁ ତ ରାଗ ।



# ଭଦ୍ରତା

ଏକ କାଳରେ ସଂସ୍କୃତରେ ଜଣେ ଆଉଜଣଙ୍କୁ ଭଦ୍ର କହି ସମ୍ବୋଧନ କରିବା ରୀତି ଥିଲା । ଶୁଭ, ମଙ୍ଗଳ ଅର୍ଥରେ ଭଦ୍ର କଥାର ଚଳଣି ମଧ୍ୟ ଥିଲା । ଏଇ ଭଦ୍ର କେବେ ଜଣକରୁ ଗଣକୁ ଯାଇ ଭଦ୍ରଲୋକ ହେଲା, ପୁଣି ଏଇ ଭଦ୍ରଲୋକଙ୍କ ଆଚରଣକୁ ଭଦ୍ରତା କୁହାହେଲା, ତା ସମାଜବିଜ୍ଞାନୀ ଖୋଜି ଦେଖନ୍ତୁ । ପୁଣି ଏଇ ଆଚାର ବଦଳିଯିବା ସଙ୍ଗେ ସଙ୍ଗେ, ନୂଆ

ଭାଷା, ନୂଆ ଆଚାର ସଙ୍ଗେ ପରିଚିତ କଲାପରେ ଭଦ୍ରରୁ ଭଲ କୁ ପରିଣାମରେ ଗଲା, ଦେଖିବାର ଅଛି । ସବୁ ଭଦ୍ରଲୋକ ଭଲଲୋକ ନୁହଁନ୍ତି କି ସବୁ ଭଲଲୋକ ଭଦ୍ରଲୋକ ନୁହଁନ୍ତି । ଯୋଉଠି ଏ ଦୁଇଟିର ମିଳନ, ବଙ୍ଗଳାରେ କହିଲେ ସେଠି ସୋନାରେ ସୋହାଗା ।

ଆପଣ ଭାବନ୍ତୁ ନାହିଁ ଯେ ଭଦ୍ରଖରେ ଥିବା ଭଦ୍ରର ଆଲୋଚିତ ହେଉଥିବା ଭଦ୍ର ସାଙ୍ଗରେ କିଛି ସଂପର୍କ ଅଛି । ଇଂରାଜୀ cat ଆଉ catalogueରେ ଥିବା catର ଯେପରି ସଂପର୍କ, ଏଇ ଉଭୟ ଭଦ୍ରର ସେଇପରି ସମ୍ପର୍କ । ତେବେ ପେଟେଣ୍ଟ ମେଡ଼ିସିନର ସେଇ ଭଦ୍ରଖିଆ ଗୋଳା, ଆଉ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଭଦ୍ରଖିଆଙ୍କ ପ୍ରତି ଯେଉଁ ଆକ୍ଷେପ ଦେଖିବାକୁ ମିଳେ, ତହିଁରୁ ଭଦ୍ରଖିଆ ଭଦ୍ରତା ପରି ଶବ୍ଦ ସୃଷ୍ଟି ହେଇଥିବା ମୁଁ ଶୁଣିଚି । ଏଥିରେ ଭଦ୍ରଖିଆ ବନ୍ଧୁମାନେ ବିଗିଡ଼ିବାର କାରଣ ନାଇଁ । ଓଡ଼ିଶାରେ ଢେଙ୍କାନାଳିଆ, ମୋଗଲବନ୍ଦିଆ, ତଳମାଳିଆ, ଗଡ଼ଜାତିଆ ଏଇ ସବୁ ଆଞ୍ଚଳିକତା ସଙ୍ଗେ ପ୍ରକାର ପ୍ରକାର ଭଦ୍ରତା ଯୋଡ଼ି ଉଲୁଗୁଣା ଦେବାର ଶୁଣାଅଛି ।

ତେବେ ଏଇ ଭଦ୍ରତା କଣ ? ପିଲାଦିନେ ମୋର ଭଦ୍ରତା ଶିଖିବା କଥା ମନେ ପଡ଼ିଲେ ଏବେବି ହସ ମାଡ଼େ । ମୁଁ ତରତର କରି ଭାତ ଗିଳି ପକେଇଲେ ମୋ ବାପା ବିରକ୍ତ ହୁଅନ୍ତି । ଗୋବେଇ ଗୋବେଇ ଖାଇଲେ ବଡ଼ବାପା କହନ୍ତି କ'ଣ ଛେଳି ମେଣ୍ଢା ପରି ଗାକୁଳେଇ ହେଉଚୁ ? ଯଦି କେବେ ଦି ଜଣଙ୍କ ମଝିରେ ବସି ଖାଇବା ଦୁର୍ଯୋଗ ହେଲା, ତେବେ ଦି ପଟର ଅଗ୍ନିଦୃଷ୍ଟିରେ ମୋ ଅବସ୍ଥା କଣ ହେଉଥିବ ଭାବନ୍ତୁ ।

ଦେଶକେ ପାଙ୍କ, ନଈକେ ବାଙ୍କ । ଯାହା ଏଠି ଭଦ୍ରତା ତାହା ସେଠି ଅଭଦ୍ରତା । ଖାଇସାରି ହାକୁଟି ମାରିଲେ ଏହା କେଉଁଠି ଖାଦ୍ୟର ପ୍ରଶଂସା ରୂପେ ଗ୍ରହଣ କରାଯାଏ ତ ଆଉ କେଉଁଠି ଅସଭ୍ୟ ଆଚରଣରେ ଗଣାଯାଏ । ଥରେ ଜଣେ ଆମେରିକା ସୈନ୍ୟବାହିନୀର ଯୁବକ ମେଜର କୌଣସି ଆରବ ଶେଖଙ୍କ ନିମନ୍ତ୍ରଣ ଖାଇ ପେଟ ଆଉଁସି ଶେଷକୁ ଏଉଡ଼ି ମାରି ଓ ପାଡ଼ି କିପରି ଆପଣା ମହତ ରଖିଥିଲେ ସେକଥା ଅନେକେ ଶୁଣିଥିବେ । ମେଜର ହଟହଟା ହୁଅନ୍ତୁ ପଛକେ, ଶେଖ ତ ଖୁସି ।

କୂଟନୈତିକ କ୍ଷେତ୍ରରେ ଭଦ୍ରତା କିପରି ଶୁଣିଲେ ଆପଣଙ୍କ ଆଖି ଖୋସି ହୋଇଯିବ । ଦୁଇଦେଶ ମଧ୍ୟରେ କନ୍ଦଳ ଲାଗିଥିବା ବେଳେ ଯେଉଁ ଚିଠିପତ୍ର ବିନିମୟ ହୁଏ ତାର ପ୍ରଥମ ଓ ଶେଷ ଧାଡ଼ି ଆମର ଏହି ମହାନ ଦେଶ ଆପଣଙ୍କ ମହାନ ଦେଶକୁ ସୌହାର୍ଦ୍ଦ୍ୟ ଜଣାଉଛି ଆଉ ଆପଣଙ୍କ ମହାନ ଦେଶ ଆମ ମହାନ ଦେଶର ଅଭିବାଦନ ଗ୍ରହଣ କରନ୍ତୁ । ଆଉ ପୁରା ଚିଠି ଗାଳିଗୁଲଜ, ଆପତ୍ତି ଅଭିଯୋଗରେ ଭରି । ସେଇଥିପାଇଁ କୂଟନୈତିକ ଧାଡ଼ିରେ ଲେଖା କଥା ନୁହେଁ, ଧାଡ଼ି ମଝିରେ ଅଲେଖା ସମ୍ବାଦ ପଢ଼ି ବୁଝିବା ଦରକାର ।

କୌଣସି ଏକ କୂଟନୈତିକ ଭୋଜିରେ ମୁଖ୍ୟ ଅତିଥିଙ୍କୁ ପ୍ରଥମେ ଗୋଟିଏ ପ୍ଲେଟରେ ମାଉଁସ କରା ହୋଇଥିବା ଜନ୍ତୁର ଆଖି ଦୁଇଟି ପରସା ଗଲା । ଡ଼ବଡ଼ବ ଅନେଇଥିବା ଆଖିକୁ

ଦେଖି ମୁଖ୍ୟ ଅତିଥିଙ୍କର ଖାନ୍ତି ଆସିବାର ଯୋଗାଡ଼ । ଉପସ୍ଥିତ ବୁଦ୍ଧି ଖଟେଇ ଛିଡ଼ାହୋଇ ଭୋଜି ଦେଉଥିବା ଦେଶର ମୁଖ୍ୟଙ୍କୁ କହିଲେ ଆମ ଦେଶର ଭଦ୍ରତା ହେଉଚି ପ୍ରାଣୀର ସବୁଠାରୁ ଭଲଅଙ୍ଗ ଯାହା ମୁଖ୍ୟ ଅତିଥିଙ୍କୁ ପରସାଯାଏ ତାହା ଦାତାଙ୍କର ପ୍ରାପ୍ୟ । ଆପଣ ମୁଖ୍ୟ ଭାବରେ ଏହା ଗ୍ରହଣ କରନ୍ତୁ । ଉଭୟେ ଖୁସି ।

ଲୁଗାପଟା ପିନ୍ଧାରେ ଭଦ୍ରତାର ଫେର ଦେଖନ୍ତୁ । ବିଲାତ ଆମେରିକାରେ ଝିଅମାନଙ୍କର ଛାତି ପଛେ ଖୋଲାଥାଉ ମଝିପେଟ ଲୁଚେଇବା ଭଦ୍ରତା । ସେଥିପାଇଁ ଅନେକ ପଶ୍ଚିମୀ ଆମ ଦେଶର ଅଞ୍ଚଳ ବିଶେଷରେ ଉପରତଳ ମଝି ଖୋଲା ଦେଖି ଆକ୍ଷେପ କରିଥିବା ମୁଁ ଶୁଣିଚି । ଅବଶ୍ୟ ଆଧୁନିକତା ଦୌଡ଼ରେ ଉପରପୋଷାକର କନା କମେଇବା ପ୍ରତିଯୋଗୀତାରେ ଉପରପୋଷାକକୁ ସଂପୂର୍ଣ୍ଣ ବର୍ଜନ କରି ପଶ୍ଚିମାଝିଏ ଆମ ଝିଅଙ୍କୁ ବଳିଗଲେ । ମୋ ପିଲାଦିନେ ଗାଁ ସ୍ତ୍ରୀ ଲୋକେ ଶାଢ଼ୀତଳେ କୌଣସି ଉପର ପୋଷାକ ପିନ୍ଧୁ ନ ଥିଲେ । କ୍ରମେ ଉପର ପୋଷାକ ପିନ୍ଧା ଭଦ୍ରତାରେ ଗଣାଗଲା । ପୁଣି ଆଧୁନିକାମାନେ ଉପରପୋଷାକ ଛାଡ଼ିବାରେ ସଭ୍ୟତାର ପ୍ରଗତି ହେଉଚି କି ପଶ୍ଚାତ୍‌ଗତି ହେଉଚି ବିଚାରିବାର ବେଳ ଆସିଚି ।

ପୁରୁଣା କାଳରେ ଲଳିତକଳା ଶିଖିବା ଝିଅମାନଙ୍କର ଭବ୍ୟତା ଥିଲା । ଆଜିକାଲି ଯୋଗାସନ କରି ଦିହକୁ ବେତ ପରି ନରମଗରମ ରଖିବା ଆଉ କାରାଟେ ଶିଖି ଆତ୍ମରକ୍ଷା କରିବା ଆଭରଣ ବୋଲି ମାନି ନିଆ ହେଉଚି । ଆଉ କଥାରେ ଭଦ୍ରତା ? ଆପଣ ଜଣେ ଭଦ୍ରଲୋକ । ଆପଣ କି ଭଦ୍ରଲୋକ ? ଆପଣ ଜଣେ କଳାପାତିଆ ଭଦ୍ରଲୋକ । ଏଇ ତିନୋଟି କଥାରେ ଭଦ୍ରଲୋକ କଥାର ଅର୍ଥ ଦେଖନ୍ତୁ ।

ଥରେ ଜଣେ ଭଦ୍ରଲୋକ ବାଟକଡ଼ର ତିନିଜଣ ଆରବ ତାଙ୍କୁ ଅକଥ୍ୟ ଭାଷାରେ ଗାଳି ଦେଉଥିବା ଶୁଣିଲେ । ଭଦ୍ରଲୋକ ବିଚାରିଲେ ସେ ହୁଏତ ଭାଷା ବୁଝନ୍ତି ନାହିଁ ଛଳନା କରି ଚାଲିଯିବେ କିମ୍ବା ଓଲଟି ତାଙ୍କ ଭାଷାରେ ଦିପଦ ଶୁଣେଇବେ । ଏ ଦିକଥା ମନକୁ ପାଇଲା ନାହିଁ । ସେ ସେମାନଙ୍କ ସହିତ ଭଦ୍ର ସମ୍ଭାଷଣ କରିବା ସ୍ଥିର କଲେ । ମୁରୁକି ହସି, ମୁଣ୍ଡ ନୁଆଇଁ ଭଦ୍ରଲୋକ ସେ ତିନିଜଣଙ୍କୁ ଉଦ୍ଦେଶ୍ୟ କରି କହିଲେ, ଭାଇମାନେ ଆପଣଙ୍କ ବାପାଙ୍କର ଅନେଶ୍ୱତ ରକ୍ଷିତାଙ୍କ ଭିତରୁ କିଏ ଆପଣଙ୍କ ମା' କହିଲେ ମୁଁ ଆପଣଙ୍କ ଉଦ୍ଦେଶ୍ୟରେ ଏକ ଉପଯୁକ୍ତ ସମ୍ବର୍ଦ୍ଧନାସୂଚକ କବିତା ରଚନା କରନ୍ତି । ଏକଥା କହି ଦିପାଦ ଆଗକୁ ଯାଇ କୌତୁକ ଯୋଗୁଁ ଫେରି ଚାହିଁ ଦେଖନ୍ତିତ ତିନିଜଣଯାକ ଛିଡ଼ା ହୋଇ ସତେ ଯେମିତି ତାଙ୍କ ଫେରି ଚାହିଁବାକୁ ଅପେକ୍ଷା କରିଛନ୍ତି । ଯେମିତି ପଛକୁ ଚାହିଁଛନ୍ତି, ତିନିଜଣଙ୍କ ଭିତରେ ବଡ଼ ବହୁତ ବିନୟ ହୋଇ କହିଲେ ଭାଇ, ଆମ ସାଙ୍ଗରେ କପେ ଚାହା ଖାଇ ଯା'ନ୍ତୁ । ଆପଣଙ୍କର ଏଇ ବିଶିଷ୍ଟ ବଚନ ଦ୍ୱାରା ଆପଣ ଆମ ଭିତରେ ଗଣା ହେବାର ଯୋଗ୍ୟତା ଅର୍ଜନ କରିଛନ୍ତି ।

ଆଗେ ସବୁ ସାମାଜିକ ଅନୁଷ୍ଠାନରେ ଭଦ୍ର ଆଚରଣର ଅପେକ୍ଷା ଥିଲା । ଆମ ଗୋଡାଦିନେ ବାହାଘରରେ ଦିଆନିଆ ହେଲେ ଆମେ ଏହାକୁ ଅଶିଷ୍ଟ ଆଚରଣ ଘୋଷଣା କରି ସେ ବାହାଘରରେ ଯୋଗ ଦେଉ ନ ଥିଲୁ । ସେତେବେଳେ ଦାବୀଦାବାର ଶ୍ରୀ ଗଣେଶ ଯୁଗ କହିଲେ ଚଳେ । ଆଜିକାଲି ଦାବୀକରି ବେଶ କିଛି ନ ଝଡ଼େଇଲେ ବାହାଘର ଠିକ୍ ହେଲାନାହିଁ ବୋଲି କୁହାଯାଉଚି । ଆଗ କାଳରେ ଋଣ ନ କରିଥିବା ଲୋକ ସମାଜରେ ସମ୍ମାନିତ ହେଉଥିଲା । ଆଜିକାଲି ଋଣ ନ ନେଇଥିବା ଲୋକକୁ ବୋକା କୁହାଯାଉଚି ଆଉ ଋଣ ଠକି ଦେଇ ପାରୁଥିବା ଲୋକଙ୍କୁ ଚାଲାକ କୁହାଯାଉଚି । ସବୁଠୁ ମଜାର କଥା ଯେ ଋଣ ଠକିବା, ଦାବୀ କରି ଶଶୁରଘରୁ ପଇସା ଝଡ଼େଇବା ଆଉ ବାହାଘର ପରେ କନ୍ୟା ପୋଡ଼ିବା ଏ ସବୁ ଭଦ୍ର ସମାଜରେ ହିଁ ବେଶୀ ହେଉଚି ।

ଆଗେ ସ୍ଥାନ କାଳ ପାତ୍ର ବିଚାର କରି କଥା କହିବା ଭଦ୍ରତାର ଏକ ଲକ୍ଷଣ ଥିଲା । ତେଣୁ ଖୋଲାଖୋଲି କେହି ଦେହର ଅଙ୍ଗ ବିଶେଷର ନାଁ କହିଲେ କିମ୍ବା କୌଣସି ନିଷିଦ୍ଧ ସମ୍ପର୍କ ଲଘଂନ କଲାଭଳି ଶବ୍ଦ କହିଲେ ଆମେ ତାକୁ ଅସଭ୍ୟ ଭାଷା ବୋଲି କହୁଥିଲୁ । ଆଜିକାଲିର ଖୋଲା ମେଲା ଆଧୁନିକତାରେ, ଯେଉଁଠି ଭବିଷ୍ୟତ ଏକମାତ୍ର କାଳ, ନିଜ ଛଡ଼ା ସଭିଏଁ ଅପାତ୍ର ଆଉ ଆପଣା ରାଜ୍ୟ ବାହାର ସବୁ ଜାଗା ସ୍ଥାନ, ସେଠି ସଭ୍ୟ ଅସଭ୍ୟ ବିଚାର କରିବା ବେଳ କାହାର ଅଛି, ମାପକାଠି ବା କାହାପାଖରେ ଅଛି ?

ଆମ ଦେଶର ପଶ୍ଚିମୀ ଜୀବନ ମାନଙ୍କୁ ଆଦର୍ଶ ରୂପେ ଗ୍ରହଣ କରାଯିବାରୁ ସେଇଦିଗରେ ଗତିକୁ ପ୍ରଗତି ରୂପେ ବ୍ୟାଖ୍ୟା କରାଯାଉଚି । ସମ୍ବଳ ଆଉ ସାମର୍ଥ୍ୟ ଅଭାବରୁ ଏଇ ଜୀବନମାନ ଆମ ପକ୍ଷରେ ଆକାଶକଇଁଆ । ଆମେ ଏଇ ସ୍ଥିତିରେ ଏପଟ ଭଦ୍ରତା ରଖିଲା ବେଳକୁ ସେ ପଟକୁ ନଅଣ୍ଟ ଆଉ ସେପଟ ଭଦ୍ରତା ଆଡ଼କୁ ଲୁଗା ଟାଣିଲା ବେଳକୁ ଏପଟ ଖୋଲା । ଲମ୍ବ ପଣତ ବିନା ସବୁଆଡ଼କୁ ପାଏ ।



# ବୟସ

ବୟସ କେତେ ? ଅନୁମାନ କରିନିଅ ।

ବୟସ କେତେ କହିବାକୁ ବଡ଼ କୁଣ୍ଠା । ତା ପୁଣି ଆପଣାଠାରୁ ଅଳ୍ପବୟସ ଲୋକଙ୍କ ଆଗରେ । ବିତି ଯାଇଥିବା ଦିନଗୁଡ଼ିକୁ ମାନି ନେବାକୁ ମନ ରାଜି ନୁହେଁ । ଅଳ୍ପ ବୟସ ନହୋଇ ଯଦି ଅଳ୍ପ ବୟସୀ ହୋଇଥାଏ ତେବେତ ଆହୁରି ଅସୁବିଧା । ଖୁଦୁବୁଡୁ ହେଉଥିବା ମନକୁ ବାନ୍ଧିରଖି ତମ ସଙ୍ଗେ ବନ୍ଧୁତା କରିବା ଦିନ ଗଡ଼ିଗଲାଣି ବୋଲି ମାନିନେବା ସହଜ କଥା ନୁହେଁ ।

ବୟସ ତ ବର୍ଷରେ ଗଣା ହୁଏ । କୌଣସି କୌଣସି ସ୍ତ୍ରୀ ଲୋକଙ୍କ ବୟସ ୩୩ରେ ଲାଖିଗଲା ପରି କୌଣସି କୌଣସି ପୁରୁଷଙ୍କ ବୟସ ୫୬ରେ ଲାଖିଯାଏ । ଇଏ ଗଲା ଆପଣା କୁମାରୀତ୍ୱ ବା ପୁରୁଷତ୍ୱ ଜାହିର କରିବା ଇଚ୍ଛା । ପୁଣି ଅବସର ଗ୍ରହଣରେ ଇଚ୍ଛା ନ ଥିବା ଲୋକ ପକ୍ଷରେ ବୟସ ନ ବଢ଼ି କମୁଥିଲେ ଅଧିକ ସୁଖ ।

ପୃଥିବୀ ଗ୍ରହ ଉପଗ୍ରହଙ୍କ ବୟସ ଆଲୋକ ବର୍ଷରେ ଗଣାଯାଏ । ସେକେଣ୍ଡକୁ ୩୦,୦୦୦୦ କିଲୋମିଟର ହିସାବରେ ଗତିକରି ଆଲୁଅ ବର୍ଷକରେ ଯେତେ ଦୂରରେ ପହଞ୍ଚେ ତା ହେଉଚି ଆଲୋକ ବର୍ଷର ମାପ ।

ଯା ଛଡ଼ା ଦେବବର୍ଷ, ବ୍ରହ୍ମବର୍ଷ ତ ଅଛି । ସାରଳା ଦାସ 'କୋଟି ଅର୍ବୁଦ ମେବଚ' ରୁ ମେବଚ୍ଛ ଶବ୍ଦ ତିଆରି କରି ଅସରନ୍ତି ବା ଅଗଣତି ଅର୍ଥରେ ବ୍ୟବହାର କରିଛନ୍ତି । ସେହିପରି ମେବଚ୍ଛ ବର୍ଷରେ ମାପି ବ୍ରହ୍ମାଣ୍ଡ ମାନ ମାନ ହୋଇ, ଯାହାର ଦେହରେ ସମ୍ଭାର, ସେଇ ପରମଶକ୍ତି ପାଖରେ ପହଞ୍ଚିବ । ଆଲୁଅବର୍ଷରେ ମପା ଯାଉଥିବା ଗ୍ରହମଣ୍ଡଳ ଏଇ ମହାଶକ୍ତିର ଜାଣିତାଏ ।

ବୟସ ଗଛପତ୍ରରେ ବସିଚି । ଜୀଅନ୍ତା ଗଛରେ ପତ୍ର ଗଣିହେଲା ପରି କାହାରି କାହାରି ବୟସର ଗଣନା ନାହିଁ । ସମସ୍ତଙ୍କର ବୟସ ବଢ଼ିଲେ ଅୟସ ଗଢ଼େ ନାଇଁ । କଥାରେ ଅଛି ଗୋଟିଏ ଦେଶରେ ଜଣେ ରାଜା ଥିଲେ । ସେ ରଜାଙ୍କର ପ୍ରତିଦିନ ଗୋଟିଏ ଝିଅ ଲୋଡ଼ା । ଝିଅ ଯୋଗାଡ଼ କରିବାକୁ ଜଣକୁ ନିଯୁକ୍ତ କରାଗଲା । ଝିଅ ଯୋଗାଡ଼ କରୁଥିବା ଲୋକ ଚାଳିଶ ବର୍ଷରେ ମଲା । ରାଜା ୮୦ ଯାଏ ବଞ୍ଚିଲେ । ଏ କଥାର ସାରହେଲା ଯେ ପଛରେ ଗୋଡ଼ୋଉଥିବା ଅଳ୍ପଜୀବି ଆଉ ଅଏସ କରୁଥିବା ଲୋକ ଦୀର୍ଘଜୀବି ।

ବୟସ କଣ ବସିଚି ? ନାଇଁ, ବୟସ ଚାଲି ଚାଲି, ଧାଇଁ ଧାଇଁ ଏବେ ପଡ଼ପଡ଼ ହେଲାଣି । ବନ ବୟସ ଆଉ କାହିଁ, ପାରିବି ପୁତ୍ର ଉପୁଜାଇ । ପୁଂ ନାମକ ନର୍କରୁ ତ୍ରାଣ ପାଇବାକୁ ହେଉ ବା ଆପଣା ବଂଶର ନାଁ ରଖିବାକୁ ହେଉ ପୁତ୍ର ଉପୁଜେଇବା ଏଇ ସମାଜର ଧେୟ ହେଲା । ତେଣୁ ବୟସ ଯିବା ସାଙ୍ଗେ ସାଙ୍ଗେ ପୁତ୍ର ଉପୁଜେଇବାର ଅକ୍ଷମତା ଯେ ଜାଟିବ ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ସାନ ବଡ଼କୁ ମୁଣ୍ଡିଆ ମାରିଲେ ଆଶୀର୍ବାଦ ହେଉଚି ଚିରଂଜୀବି ହେଇଥା । ସବୁଦିନ ବଞ୍ଚିରହିବା ଆଶୀର୍ବାଦ କି ଅଭିଶାପ ଏକଥା ବିଚାରିବାର ବେଳ ଇଏ ନୁହେଁ । ମୋ ବୟସ ତତେ ଲାଗିଯାଉ – ଇଏ ହଉଚି ଦୀର୍ଘଜୀବି ଲୋକର ଆଶୀର୍ବାଦ । ଅଳ୍ପ ବୟସରେ ନିଶ୍ଚିତ ମୃତ୍ୟୁ ଜାଣିଥିବା ଲୋକ ପକ୍ଷରେ ଏ ଆଶୀର୍ବାଦ ଦେବା ମଧ୍ୟ ସମ୍ଭବ ନୁହେଁ ।

କଥାରେ ଅଛି, ଅସମୀୟା ବ୍ରାହ୍ମଣଠାରୁ ଆଶୀର୍ବାଦ ନେବା ଅନୁଚିତ । କାହିଁକି ନା 'ଶତାୟୁ ଭବ' ଯାଗାରେ ସେ 'ହତାୟୁ ଭବ' କହେ । ଆସାମୀ ଭାଷାରେ ସ,ଶ,ଷ ତିନୋଟିଯାକ ହ ରେ ପରିଣତ ହୋଇଥିବାରୁ ଏଇ ଦଶା । ଅସମ ଲେଖା ହେଲେ ମଧ୍ୟ ପଢ଼ିବ ଅହମ ।

ଧର୍ମବକଙ୍କ ପ୍ରଶ୍ନ 'କିମାଶ୍ଚର୍ଯ୍ୟ' ଉତ୍ତରରେ ଯୁଧିଷ୍ଠିର କହିଥିଲେ, ପ୍ରତିଦିନ ଆମ ଆଖି ଆଗରେ ଜୀଅନ୍ତା ପ୍ରାଣୀ ଯମ ମନ୍ଦିରକୁ ଯାଉଛନ୍ତି । ବାକି ଯିଏ ରହିଲେ ସିଏ ଚିର ଅମର ହେବାର ଇଚ୍ଛା କରୁଛନ୍ତି ଯା ଠାରୁ ଆଉ ଆଶ୍ଚର୍ଯ୍ୟ କଣ ଅଛି ?

ବୟସର ଗୁଣ ଦୋଷ ବାରିବାର ଏଇଆତ ପୃଷ୍ଠଭୂମି ।



# ଜାତି

ସେଦିନ ସହରୀ ବାବୁମାନେ ଆସି ଗାଁରେ ସଭା କରୁଥିଲେ । କୁସଂସ୍କାର ଦୂର କରିବାକୁ ହେବ । ଗାଁର ଜାତିଆଣ ଭାବ ତାଡ଼ି ଫୋପାଡି ଦବାକୁ ହବ । ସମାଜରୁ ଯୌତୁକ ପ୍ରଥା ଦୂର କରିବାକୁ ହବ । ଏମିତି କେତେ କଥା ।

ଆଉ ଜଣେ ବାବୁ କହିଲେ ଆମର ଅତୀତ ଇତିହାସ ବୋଲି କିଛି ନାହିଁ । ଯାହା ଅଛି ପୁରାଣ । ସେଥିରେ ସବୁ ଅସମ୍ଭବ କଥା । କ୍ଷୀର ସମୁଦ୍ର, ଗରିଆଡ଼ ଘିଅ ମହୁରେ ଭାସୁଚି, ରଜାଙ୍କ ରାଜୁତି ଲକ୍ଷକୋଟି ବର୍ଷ, ରଜାଙ୍କ ସୈନ୍ୟ ଖର୍ଚ୍ଚ ନିଖର୍ଚ୍ଚ । ଯାହା ବା ଅତୀତ ତା ଏକଦମ ଜମିଥିବା ପାଣିପରି ନିସ୍ତରଙ୍ଗ । ଗାଁର ଜୀବନ ନିଶ୍ଚଳ ଜୀବନ । ଏଇ ନିଶ୍ଚଳତା ଭାଙ୍ଗିବାକୁ ପଡ଼ିବ । ଏମିତି କେତେ କଥା ।

ଗୋବିନ୍ଦ ବେହେରା କହିଲେ ଆମ ଗାଁ ମହାନ୍ତିଙ୍କ ପୁଅ ପାଠପଢ଼ି ଦୋପଟୀ ହେଲେ । ଆମ ଗାଁରେ ସବୁଠୁ ଯୌତୁକ ବେଶୀ ସେଇ ନେଇଛନ୍ତି । ଆମ ଗାଁରୁ ଜଣେ କୁଏତ ଯାଇଥିଲେ । ତାଙ୍କ ଭଉଣୀ ବାହାଘରକୁ ସିଏ ସବୁଠୁ ବେଶୀ ଯୌତୁକ ଦେଇଛନ୍ତି । ଆମେ ଯିଏ ଗାଁରେ ଅଛୁ ଆମଠୁ ପାଠପଢୁଆ ଲୋକଙ୍କ ଯୌତୁକ ଦାବୀ ବେଶୀ । ଯିଏ ବାହାରକୁ ଯିବାରୁ ତାଙ୍କ ଆଖି ଖୋଲିଲା, ସେଇମାନେ ଯୌତୁକ ଦବାନବା ଦଳରେ ରହିଲେ । ତମେ ଆମକୁ ଗାଳି ଦଉଚ କାହିଁକି ?

ହାଡୁ ସାହୁ କହିଲେ ବାବୁ ତମେ ପିଲାଲୋକ । ଏ ଗାଁ କଥା କଣ ଜାଣିଚ ? ଏ ଗାଁର ଅଧେ ଲୋକ ଚାରିଧାମ କରି ଫେରିଛନ୍ତି । ଆମ ବିକାଶ ପଞ୍ଚାୟତ ବୁଝିଲା ଦିନୁ ବାହାର ଲୋକଙ୍କ ଗାଁକୁ ଆସିବା ଦଶଗୁଣ ବଢ଼ିଯାଇଛି । ମୁଁ ତ ତିନିପୁରୁଷ କଥା ଜାଣେ । ଏଇ ଗାଁର ତିନିପା ଲୋକ ତିନିପୁରୁଷ ହେଲା ଅନ୍ୟ ଅଞ୍ଚଳରୁ ଆସି ଏଠି ବସତି କରିଛନ୍ତି । ଆମ ଗାଁରୁ ଯିବାରେ ହେଳା ନାହିଁ କି ଆସିବାରେ ହେଳା ନାହିଁ । ଆମ ଗାଁରେ ନୂଆ ସାର ଯୋଗୁ ଫସଲ ଆଉ ଆୟ ଦିଗୁଣ ହେଲା । ତମେ ଆମ ଜୀବନକୁ ନିଶ୍ଚଳ ଜୀବନ ବୋଲି କାହିଁକି କହୁଚ ?

ବାଉରୀ ସାଆନ୍ତ ଗୋଟିଏ କଣକୁ ବସିଥିଲେ । ସିଏ ପଚାରିଲେ, ହଇଓ ବାବୁ,

ତମେତ ପୁରାଣକୁ ନିନ୍ଦୁଚ । ଆଗ୍ଭା ବର୍ଣ୍ଣ ଆଉ ଜାତି ଭିତରେ ଫରକ ବୁଝେଇଲ । ଚାରିବର୍ଣ୍ଣରୁ ଯେ ଚାରି ହଜାର ଜାତି ହେଲା, ତାର ମରମ କଣ ? ଯୋଉଠି ଯୋଉଠି କୁସଂସ୍କାର ଦୂର ହେଇଚି ବୋଲି ତମର ଧାରଣା ସେଠି ସବୁ ଜାତି କିମ୍ବା ସେଇ ପ୍ରକାରର ଅନ୍ୟ ଭେଦଭାବ ଅଛି ନା ସରିଏଁ ଏକପ୍ରକାର । ଆମ ଖବରକାଗଜ, ରେଡ଼ିଓ ଆଉ ବିଦେଶୀ ଲୋକଙ୍କଠାରୁ ଆମେ ଯେଉଁସବୁ ସମ୍ବାଦ ଶୁଣିବାକୁ ପାଉଚୁ ସେଥିରୁ ତ ମନେ ହେଉନି ଯେ, ସେମାନେ ଆମଠୁ ଅଲଗା । ଜାତି ଗୋଟିକେ ସଂସ୍କାର ଗୋଟିଏ । ଆମେରିକା ଜାତି, ବିଲାତି ଜାତି ଦିଜଣଙ୍କ ସଂସ୍କାର କ'ଣ ଏକା ? ଚୀନ୍, ଜାପାନ, ଋଷିଆ ସଂସ୍କାର ଖାଲି ସେମାନଙ୍କଠୁ ଭିନ୍ନ ନୁହେଁ । ପରସ୍ପରଠାରୁ ଭିନ୍ନ । ତମେମାନେ ତ ନିଜ ସଂସ୍କାର ବୁଝିଲ ନାଇଁ ଆଉ ଆମଠୁ କୁସଂସ୍କାର ଦୂର କରିବ କ'ଣ ?

ସହରୀ ବାବୁମାନେ ଗାଉଁଲି ଲୋକଙ୍କଠି ଏତେ ବୁଦ୍ଧି ଅଛି ବୋଲି ଆଶା କରୁନଥିଲେ । ସେମାନେ ଏଇ ପ୍ରଶ୍ନବାଣରେ ଦବିଗଲେ ଟିକିଏ । ତାପରେ ଚାଲିଲା ବକ୍ତୃତା । ସମାଜର ଅସମାନତା କେମିତି ମଣିଷଗଢ଼ା, ଜଣ କେମିତି ଗଣକୁ ଶୋଷଣ କରେ, ଗୋଟିଏ ଗୋଷ୍ଠୀ କେମିତି ଆଉ ଗୋଟିଏ ଗୋଷ୍ଠୀକୁ ଶୋଷଣ କରେ ଏଇ ସବୁ ବୁଝେଇ ବାବୁମାନେ ଚାଲିଗଲେ । ଗାଁ ଲୋକଙ୍କର ମନ କିନ୍ତୁ ସନ୍ତୋଷ ହେଲା ନାଇଁ । ପୁଣି ବିଚାର ଚାଲିଲା ।

ମହନୀ ମିଶ୍ରେ କହିଲେ ଆମ ପୁରାଣରୁ ଜଣାଯାଏ ଯେ, ପୁରୁଣା କାଳରେ ଆମର ଦୁଇଟି ପରମ୍ପରା ଥିଲା । ଗୋଟିଏ ବଶିଷ୍ଠ ପରମ୍ପରା, ଆଉ ଗୋଟିଏ ବିଶ୍ୱାମିତ୍ର ପରମ୍ପରା । ବଶିଷ୍ଠ ଥିଲେ ବ୍ରହ୍ମଋଷି । ବିଶ୍ୱାମିତ୍ର ଥିଲେ ରାଜଋଷି, ଯେମିତି ଥିଲେ ଜନକ । ବିଶ୍ୱାମିତ୍ର କେଡ଼େ ବଡ଼ ଋଷି । ଆପଣା ତପସ୍ୟା ବଳରେ ତ୍ରିଶଙ୍କୁ ପାଇଁ ମଝି ସ୍ୱର୍ଗ ତିଆରି କଲେ । ହେଲେ ବ୍ରହ୍ମଋଷି ହେବାର ଇଚ୍ଛା ତାଙ୍କର ପୂରଣ ହେଲାନାଇଁ । ବ୍ରହ୍ମଋଷିମାନଙ୍କ ମଉଡ଼ମଣି ବଶିଷ୍ଠ ତାଙ୍କୁ ସ୍ୱୀକାର ନକଲାଯାଏ ସେ ବ୍ରହ୍ମଋଷି ହେଇପାରିବେ ନାଇଁ । ଯେତେଥର ସେ ବଶିଷ୍ଠଙ୍କ ଆଶ୍ରମକୁ ଯାଇଛନ୍ତି, ପ୍ରତିଥର ବଶିଷ୍ଠ ରାଜଋଷି ଆସନ୍ତୁ କହି ତାଙ୍କୁ ଆଦରରେ ପାଛୋଟି ନେଇଛନ୍ତି । ଏଥିରେ ବଦରାଗୀ ବିଶ୍ୱାମିତ୍ରଙ୍କ ରାଗ ବଢ଼ିଚି ସିନା କମିନାଇଁ । ଶେଷକୁ ବିଶ୍ୱାମିତ୍ର ଆପଣା ରାଗରେ ସ୍ଥିର କଲେ ଯେ ସେ ପୁଣି ତପସ୍ୟା କରିବେ । ଅଧିକ ଶକ୍ତି ଅର୍ଜନ କରିବେ । ବିଶ୍ୱାମିତ୍ର କଠୋର ତପସ୍ୟା କଲେ । ବର ପାଇଲେ ଯଦି ସେ ପିଠି ଫେରେଇ ଚାଲି ଆସିବେ ତେବେ ବଶିଷ୍ଠ ଜଳିଯିବେ । ଋଷିମାନେ ତ ତ୍ରିକାଳଦର୍ଶୀ । ବଶିଷ୍ଠ ଏକଥା ସାଂଗେ ସାଂଗେ ଜାଣିଗଲେ । କିନ୍ତୁ ବିଶ୍ୱାମିତ୍ର ଯେତେବେଳେ ତାଙ୍କ ଆଶ୍ରମ ଦୁଆରେ ପହଞ୍ଚିଲେ, ଆଗପରି ହସ ହସ ମୁହଁରେ ରାଜଋଷି ଆସନ୍ତୁ ବୋଲି ଡାକିଲେ । ବିଶ୍ୱାମିତ୍ର ଥକା ହୋଇ ଦଣ୍ଡେ ଠିଆ ହୋଇଗଲେ । ଯଦି ସେ ପିଠି ଫେରେଇ ଚାଲିଯାଆନ୍ତି ତେବେ ଏଡ଼େ ବଡ଼ ଋଷି ଜଳି ଭସ୍ମ ହୋଇଯିବେ । ବିଶ୍ୱାମିତ୍ର ପଛକୁ ତିନିପାଦ ପଛେଇ ପଛେଇ ଗଲେ । ଯେମିତି ଫେରିବାକୁ ମୁହଁ ବୁଲେଇଛନ୍ତି, ବଶିଷ୍ଠ କହିଲେ ବ୍ରହ୍ମଋଷି ଆସନ୍ତୁ । ବିଶ୍ୱାମିତ୍ର

ଆଚମ୍ବିତ ହେଲେ। ନିଜ ମରଣ କାଳ ସାମନାରେ ଦେଖି ବି ସିଏ ରାଜରଷି ବୋଲି ଡାକିଲେ। ହଠାତ୍ ତାଙ୍କ ମତ ବଦଳିଲା କେମିତି। ବଶିଷ୍ଠ ସବୁ ବୁଝିଲା ପରି କହିଲେ ବ୍ରହ୍ମରଷି, ଆପଣ ସବୁ ଜିଣିଥିଲେ। ରାଗ ବ୍ରହ୍ମଚଣ୍ଡାଳ। ଆପଣ ତାକୁ ଜିଣି ନଥିଲେ। ଏଇ ତିନି ପାଦ ପଛେଇବାରେ ଆପଣ ରାଗକୁ ଜିଣି ବ୍ରହ୍ମରଷିପଦ ପାଇଲେ।

ଏଇ କଥାର ମର୍ମ ହେଲା ଯେ, ଆପଣାର ଗୁଣ ଓ କର୍ମ ବଳରେ ଯେ କେହି ସବୁଠୁ ବଡ଼ ଅଧିକାର ପାଇ ପାରୁଥିଲା। ଏଇଆ ତ ଗୀତାରେ କୁହାଯାଇଛି। ଗୁଣ କର୍ମ ବିଭାଗରୁ ଚାରିବର୍ଣ୍ଣର ସୃଷ୍ଟି ହୋଇଥିଲା। ବ୍ରାହ୍ମଣ କହିଲେ କଣ ଗୋଟିଏ ଜାତି ? କାଶ୍ମୀର ବ୍ରାହ୍ମଣ ମାଉଁସ ଖାଆନ୍ତି। ବଙ୍ଗାଳୀ ବ୍ରାହ୍ମଣ ମାଛ ଖାଆନ୍ତି ଆଉ ଦକ୍ଷିଣ ବ୍ରାହ୍ମଣ ସଂପୂର୍ଣ୍ଣ ନିରାମିଷ। ଦ୍ୱିବେଦୀ, ତ୍ରିବେଦୀ ବେଦ ପଢ଼ିବାରୁ ନାଁ ପାଇଲେ ଓ ଚାଷ କରିବା ବ୍ରାହ୍ମଣ ହଳୁଆ ବ୍ରାହ୍ମଣ ହେଲେ। ରୋଷେୟା ପଣ୍ଡା କି ପୂଜାରୀ ହେଲେ ତ ଶିକ୍ଷକ ଉପାଧ୍ୟାୟ କି ଓଝା ହେଲେ। ଯଦି ଧର୍ମ ଧାରଣା ଦୃଷ୍ଟିରୁ ଆୟାର, ଆୟାଙ୍ଗାର ଅଲଗା ହେଲେ ପରମ୍ପରା ଦୃଷ୍ଟିରୁ ଦଇତାପତି ଅଲଗା ହେଲେ, ତେବେ ଚାରିବର୍ଣ୍ଣ ଚାରି ହଜାର ଜାତି ହେବାରେ ଆଶ୍ଚର୍ଯ୍ୟ କଣ ? ୟୁରୋପରେ ବିଭିନ୍ନ ପେଶାର ଗିଲ୍ଡ୍ ଥିଲା। ଏଠି ଯଦି ବିଭିନ୍ନ ପେଶାରୁ ବିଭିନ୍ନ ଜାତିର ସୃଷ୍ଟି ହେଲା, ତେବେ ଆମକୁ ପଛୁଆ ବିଚାରିବାର କାରଣ କଣ ?

ଲକ୍ଷ୍ମୀଧର କହିଲେ ଜାତିପ୍ରଥା ଯେତେବେଳେ ସୁବିଧା ହେବା ବଦଳରେ ବେଡ଼ି ହେଲା, ସେତେବେଳେ ସମାଜର ପତନ ଆରମ୍ଭ ହେଲା। ଜାତି ଜାତି ଭିତରେ ବାଡ଼ ପଡ଼ିଲା। ଜାତିର ଅଧିକାର ମୋହରେ ବଡ଼ଜାତି ସାନଜାତି ଉପରେ ଅତ୍ୟାଚାର କଲେ। ଭାରତ ଆପଣାର ଅତୀତ ପରମ୍ପରା ଭୁଲିଗଲା। ଭାରତରେ ସବୁକାଳେ ଅନୁଲୋମ ବିଲୋମରେ ଜାତି ଜାତି ଭିତରେ ଚଳପ୍ରଚଳ ଥିଲା। ପୁରାଣରେ କୁହାଯାଇଛି ରାମଚନ୍ଦ୍ର ସୀତାଙ୍କୁ ଖୋଜିବାକୁ ଗଲାବେଳେ ଯାଗା ଯାଗାରେ ବ୍ରାହ୍ମଣ ସ୍ଥାପନା କରିଥିଲେ। ବିଭିନ୍ନ ଜାତିର ଲୋକଙ୍କୁ ବ୍ରାହ୍ମଣ ରୂପରେ ପ୍ରତିଷ୍ଠା କରିବା ପରମ୍ପରାର ଶେଷ ପ୍ରତିନିଧି ରାମାନୁଜାଚାର୍ଯ୍ୟ। ରାମାନୁଜ କେତେ ନୀଚ ଜାତିର ଲୋକଙ୍କୁ ବ୍ରାହ୍ମଣ ନ କରଛନ୍ତି ? ଆଉ କ୍ଷତ୍ରିୟ ? ଯିଏ ବାହୁବଳରେ ରାଜ୍ୟ ଜିଣିଲା ସିଏ ବୋଲେଇଲା କ୍ଷତ୍ରିୟ। କେତେ ସାନ ଜାତିର ଲୋକ ରଜା ହେଇ ଏ ଦେଶରେ ଚନ୍ଦ୍ରବଂଶୀ, ସୂର୍ଯ୍ୟବଂଶୀ କ୍ଷତ୍ରିୟ ବୋଲେଇଛନ୍ତି ତାର କଳଣା ନାଇଁ। ଶାସ୍ତ୍ରରେ କୁହାଯାଇଛି, ପ୍ରତ୍ୟେକ ମଣିଷ ଜନ୍ମ ଶୂଦ୍ର, ସଂସ୍କାରରୁ ସମସ୍ତେ ଦ୍ୱିଜ, ବେଦ ପଢ଼ିବା ଲୋକ ବିପ୍ର ଆଉ ଯିଏ ବ୍ରହ୍ମକୁ ଜାଣେ ସିଏ ବ୍ରାହ୍ମଣ। ଏଡ଼େ ବଡ଼ ପରମ୍ପରା ଯୋଉ ଦେଶର ଥିଲା ସେ ଦେଶର ଏ ଦୁର୍ଗତି କାହିଁକି ? ଜାତି ନାଁରେ ଏ ଲଢ଼େଇ କାହିଁକି ?

ବାବନ ଦାସେ କହିଲେ ଆମ ଜଗନ୍ନାଥଙ୍କ ପାଖରେ ଜାତିପତି ନାଇଁ। ଏଠି ମହାପ୍ରସାଦ ବ୍ରାହ୍ମଣ ହାତରୁ ଚଣ୍ଡାଳ ଉଛୁଳି ଖାଇବାର ରୀତି ଅଛି। ଏଠି ଦାସିଆ ବାଉରୀ, ଭୀମଭୋଇ, ସାଲବେଗ ସଭିଏଁ ଭକ୍ତ। ସଭିଏ ସମାନ। ଏଇଠି ଦଇତାପତି ବ୍ରାହ୍ମଣ ଓ

ଶବର ମେଳଣର ସତକ । ଏଇ ଆମ୍ ଗାଁ କଥା ଦେଖ । ପଟ୍ଟନାୟକ, ମହାନ୍ତି, ମଙ୍ଗରାଜ, ସିଂହ, ରାୟ ସମସ୍ତଙ୍କ ସାଙ୍ଗରେ ସମସ୍ତଙ୍କ ବାହାଘର ଚଳିଲାଣି । ଓଡ଼ିଶା ସ୍ୱାଧୀନ ହେଲାଯାଏ ଶାନ୍ତିବେଳେ ଚାଷ ଆଉ ଯୁଦ୍ଧବେଳେ ଖଣ୍ଡା ଧରିବା ଓଡ଼ିଆ ପାଇକଙ୍କ ରୀତି ଥିଲା । ଗଜପତିଙ୍କ ସେନାପତି ଥିଲେ ପଟ୍ଟନାୟକ, ହିସାବ ରଖିବା ଅଧିକାରୀ ଥିଲେ ପାଣ୍ଡିଆ, ଶାସନ ଅଧିକାରୀ ବକ୍ସି ଆଉ ମନ୍ତ୍ରୀ ଥିଲେ ବେବର୍ତ୍ତା । ସ୍ୱାଧୀନତା ଗଲାପରେ ଯେଉଁ ମିଛ ଭେଦଭାବ ଏମାନଙ୍କୁ ଅଲଗା କରିଥିଲା ସେ ବାଡ଼ ଆପଣା ଛାଏଁ ଭାଙ୍ଗୁଚି । ଆମେ ଯାକୁ ଆମ ବ୍ୟବସ୍ଥାର ବଳ ନ ବିଚାରି ଦୁର୍ବଳତା ବୋଲି ଭାବୁଚୁ କାହିଁକି ?

ଜଗନ୍ନାଥଙ୍କୁ ପତିତପାବନ କରି ଯୋଉମାନେ ସିଂହ ଦୁଆରରେ ବସେଇଲେ ସେଇମାନେ ପତିତ । ଖାଲି ଜଗନ୍ନାଥ କାହିଁକି ଭାରତର ସବୁ ଦେଉଳ, ଗୀର୍ଜା, ମସଜିଦ୍ ଆଉ ଧର୍ମସ୍ଥାନମାନ ସମସ୍ତଙ୍କ ପାଇଁ ଖୋଲା ରହିବା ଦରକାର । ଯିଏ ଭକ୍ତିଭାବନା ଧରି ଧର୍ମସ୍ଥାନକୁ ଯିବାକୁ ଇଚ୍ଛା କରିବ ତା ପାଇଁ କୌଣସି ବନ୍ଧନ ନରହିବା ହିଁ ହିନ୍ଦନ୍ । ଏହାହିଁ ଭାରତୀୟ ସଂସ୍କୃତିର ମୂଳକଥା ।



୧

# ଏକତା

ଗଦେଇ ବସି ବସି ଭାବୁଛି । ଭାବନାର ଲହଡ଼ିରେ ଉବୁଟୁବୁ ହେଇ ସିଏ କୂଳଥଳ ପାଉନାହିଁ । ସମସ୍ତେ ଏକତା ପାଇଁ ପାଟି କରୁଛନ୍ତି, ଅଥଚ ଏକତା ନାଇଁ । ଗଦେଇ ନିଜକୁ ନିଜେ ପଚାରେ କ'ଣ ଏକତା ଥିଲା, ଚାଲିଗଲା ନା ଏକତା ମୂଳରୁ ନଥିଲା ? ଏକତା ନଥିଲା ଏକଥା ମାନିବାକୁ ମନ ତିଆର ନୁହେଁ । ତା ପିଲାଦିନେ ବାରମାସକୁ ତେର ପାର୍ବଣ, ମେଳା ମହୋତ୍ସବ ଲାଗି ରହିଥିଲା । ଆଜି ବିନ୍ଧାଣୀମା ଯାତ୍ରା କାଲି ଜାଗିଆପଡ଼ା ଯାତ୍ରା । ଉପରଗଡ଼ ତଳଗଡ଼ ଜିଦାଜିଦି କାହା ଯାତ୍ରା ଭଲ ହେବ । ସେତେବେଳେ ତ ଗାଁ ଯାକ ବସୁଥିଲେ । ଶକ୍ତି ଅନୁସାରେ ଚାନ୍ଦା ଦେଇ ଯାତ୍ରା ହେଉଥିଲା । ଫୁଲ ଫାନୁସ, ବାଘନାଚ, ବନାଚି ବୁଲା, ବାଡ଼ି ବୁଲା, କୁମ୍ଭ, ଚେଙ୍ଗ, ଚକ୍ର ଠାରୁ ଆରମ୍ଭ କରି ହାବେଳୀ ବାଣ, ଗଛବାଣ ସବୁ କୁଆଡ଼େ ଗଲା । ଗଦେଇ ଭାବିଲା, ଲକ୍ଷ୍ମୀ ଯେତେବେଳେ ଆସନ୍ତି ନଡ଼ିଆରେ ପାଣି ପଶିଲା ପରି ଆସନ୍ତି ଆଉ ଲକ୍ଷ୍ମୀ ଯେତେବେଳେ ଯାଆନ୍ତି ହାତୀଖିଆ କଇଁଥ ପରି ଯାଆନ୍ତି । ଉପର ଖୋଳ ଠିକଠାକ, ଭିତରୁ ସବୁ ଖଲାସ । ଏକତା ସେମିତି କେତେବେଳେ ଉଭେଇ ଯାଇଛି କେହି ଜାଣି ପାରି ନାହାନ୍ତି । କର୍ପୂର ଉଡ଼ି ଯାଇଚି, ଖାଲି କନା ପଡ଼ିଚି ।

ଗଦେଇ ଗଡ଼ଜାତରେ ମଣିଷ ହେଇଚି । ରଜା ବିରୁଦ୍ଧରେ ସିଏ ଲଢ଼ିଥିଲା । ଲଢ଼ିଲା ବେଳେ ଏକତା ଥିଲା । ଗାନ୍ଧୀଙ୍କି ଲୋକେ ମାହାତ୍ମା କହୁଥିଲେ । ସେଇ ଗାନ୍ଧି ମାହାତ୍ମାଙ୍କ

ଡାକରେ ଲୋକେ ଏକାଠି ହେଲେ । ରାଜାଙ୍କ ଶାସନ ଟଳିଲା । ଦେଶଟା ଓଲଟପାଲଟ ହେଇଗଲା । ରଜା ରଜାଥିଲା ଯାଏ ତାଙ୍କର ଲୋକଙ୍କୁ ଡର ଥିଲା । ସିଏ ବି ଯାନିଯାତ୍ରାରେ ଭାଗ ନେଉଥିଲେ । ସିଏ ଆପଣା ସୁଆର୍ଥୀ ଯେମିତି ଥିଲେ, ବିପଦ ଆପଦକୁ ଲୋକଙ୍କ ପାଖରେ ଠିଆ ହେଉଥିଲେ । ଏବେ ରଜା ମନ୍ତ୍ରୀ ହେଲେ । ସେଇ ପାଞ୍ଚବର୍ଷରେ ଥରେ ଦେଖା । ଲୋକଙ୍କ ସାଂଗରେ ଆଗର ସମ୍ବନ୍ଧ ନାଇଁ । କିଏ କେତେବେଳେ ପଚାରିଲେ କହନ୍ତି, ମୁଁ ସେତେବେଳେ ଏଡ଼େ ସାନରାଜ୍ୟର ରଜା ଥିଲି, ଏବେ ଏଡ଼େ ବଡ଼ରାଜ୍ୟର ମନ୍ତ୍ରୀ ! ବେଳ କାଇଁ ?

ଗଦେଇ ବସି ବସି ଭାବୁଛି । ଖୋଳ ବଦଳଚି କିନ୍ତୁ ଅଏସ ବଦଳି ନାହିଁ । ରଜା ମନ୍ତ୍ରୀ ହେଇ ତାଙ୍କ ଦରବାର ଜାହିର ରଖିଛନ୍ତି । ଆଉ ରାଜ୍ୟର ବୀର ଛତରା ମନ୍ତ୍ରୀ ହେଇ ରଜା ଅଏସ କରୁଛନ୍ତି । ଭଲଲୋକ ସବୁ ଆଡ଼େଇ ହେଇ ରହିଲେ । ଗଦେଇର ଗାନ୍ଧି ବୁଢ଼ା କଥା ମନେ ପଡ଼େ । ମନେ ପଡ଼ିଲେ ତା ଆଖିରେ ଲୁହ ଆସେ । ନିଜକୁ ଦୋଷୀ ମନେ ହୁଏ । ଗାନ୍ଧି ବୁଢ଼ା ତ ଗ୍ରାମ ସ୍ୱରାଜ୍ୟ କଥା କହୁଥିଲେ । ଗାଁରୁ କ୍ଷମତାର ଉଦ୍ଭବ ହେଇ ଶେଷକୁ ଦେଶର କ୍ଷମତା ଗଢ଼ିବ ଏଇଆ ଥିଲା ଗାନ୍ଧୀ ଚିନ୍ତା । ଏଇ କେଇଟା ବର୍ଷରେ ଲୋକେ ଦିଲ୍ଲୀମୁହାଁ ହେଇଯାଇଛନ୍ତି । ଭୁବନେଶ୍ୱର ଗଲେବି ଶୁଣିବାକୁ ମିଳୁଛି ଆମେ ଦିଲ୍ଲୀ ବାଟେନିକି ଅନେଇଚୁ । ଯଦି ଗାଁ ଲୋକେ ସହରକୁ ଅନେଇବେ, ସହର ଲୋକେ ରାଜଧାନୀକି ଅନେଇବେ ଆଉ ପ୍ରଦେଶ ରାଜଧାନୀ ଦେଶ ରାଜଧାନୀକି ଅନେଇବେ ତେବେ ଆପଣା ବଳ ଉପରେ ଲୋକଙ୍କର ଭରସା ରହିବ କାହିଁକି ? ମୋଗଲ କାଳର ଉଆସ ରାଜନୀତି ପରି ଏକାଳର ରାଜନୀତି ଚାଲିଚି । ଦରବାରିଆ, କାନକୁହା, ଚୁଗୁଲିଆ, ଭେଦିଆ ଏଇମାନଙ୍କ କାଟତି ବେଶି । ଲୋକଙ୍କ ଏକତା ହେଲେ ଏମାନଙ୍କର ରାରୁତି ଚଳିବ କେମିତି । ଗଦେଇର ମନେହେଲା ଯେଉଁମାନେ ଏକତା କଥା କହୁଛନ୍ତି, ସେମାନେ ବିଭିନ୍ନ ରାଜ୍ୟରେ ଏଇମାନଙ୍କ ଏକତା କଥା କହୁଛନ୍ତି । କ୍ଷମତାଧାରୀଙ୍କ ଏକତା, ତାଙ୍କ ରଖୁଆଳ ଏଇ ମଝିଲା ମଣିଷଙ୍କ ଏକତା । ଭାଷାର ଅର୍ଥ ବଦଳି ବଦଳି ଯାଉଛି । ସାଧାରଣ ଲୋକ ଯୋଉ ତିମିରେ ସେଇ ତିମିରେ ।

ଗଦେଇର ପିଲାଦିନ କଥା ମନେ ପଡ଼ିଲା । ଚାହାଳୀରେ ଦାଢ଼ିଆ ମାଷ୍ଟେ ଯାହା ପଢ଼େଇଥିଲେ ଏତେ ପ୍ରି-ସ୍କୁଲ, କେ.ଜି. ଆଉ ପ୍ରାଇମେରୀ ସ୍କୁଲ ହେଇ ବି ତା ପଢ଼ା ହେଉନି । ଚାହାଳୀ ପଢା ବହିକଥା ମନେ ଅଛି । ଭାଇ ଭାଇ ଭିତରେ ମନ କଷାକଷିରୁ କଳି । ଘର ଭାଙ୍ଗି ଯିବାକୁ ବସିଛି । ବୁଢ଼ା ବାପ ଚାରିପୁଅଙ୍କୁ ଡାକିଲା । ସମସ୍ତଙ୍କୁ ଖଣ୍ଡେ ଖଣ୍ଡେ କାଠ ଦେଇ ଭାଙ୍ଗିବାକୁ କହିଲା । ସମସ୍ତେ ଭାଙ୍ଗିଦେଲେ । ତାପରେ ସେଇ ମାପର ଚାରିଖଣ୍ଡ କାଠ ଏକାଠି ବାନ୍ଧି ଭାଙ୍ଗିବାକୁ କହିଲା । କେହି ଭାଙ୍ଗି ପାରିଲେ ନାଇଁ । ଚାରିଭାଇ ଲାଜରା ହେଲେ । ସେଇଦିନୁ ଏକାଠି ରହିଲେ । ଘର ପୁଣି ମୁଣ୍ଡ ଟେକି ଠିଆ ହେଲା । ଆଜି

ପିଲାଏ କିଏ କୁଆଡ଼େ ଗଲେ । ବୁଢ଼ା ଗଦେଇ ଖାଲି ସ୍ମୃତିର ବୋଝ ବୋହି ଅତୀତକୁ ଝୁରି ହେଉଚି । ଯୋଉ ଗଦେଇ ସୁନା ଭବିଷ୍ୟତର ସପନରେ କଲେଜ ଛାଡ଼ି ସ୍ୱାଧୀନତା ଆନ୍ଦୋଳନକୁ ଡିଆଁ ମାରିଥିଲା ସେଇ ଗଦେଇର ସପନ, ଆଗୁଆପଣ ସବୁ ଯେମିତି ଚୁରି ହେଇଯାଇଛି । ଦେଶର ଏକତା ବି କ'ଣ ସେମିତି ଯାଇଚି ?

ଗଦେଇ ଆପଣା ଅନୁଭବ କଥା ଭାବିଲା । ଆପଣା ତିନି ପୁରୁଷର ଶୁଣା କଥା ଆଉ ପଢ଼ାପୋଥି ସବୁ ମନେ ପକେଇଲା । ଜୋଉ ଆଦିକାଳରୁ ଭାରତରେ ନାନା ଜାତି, ନାନା ଧର୍ମ, ନାନା ମତର ଲୋକେ ଘର କରି ରହିଆସିଛନ୍ତି । ତାଙ୍କ ଭିତରେ କଳିକନ୍ଦଲ ଯେ ନୋହିଛି ନୁହେଁ । ବାହାରୁ ତୁର୍କୀ, ମୋଗଲ, ଶକ, ହୁଣ, ଯବନ, ଇଉରୋପୀୟ, ବିଲାତି କେତେ ଲୋକ ଆସିଲେ, ଗଲେ । ଭାରତ ଭାରତ ହେଇ ରହିଚି । ତା ସଂସ୍କୃତିର ମୂଳ ଚେର ଏତେ ଗହୀରକୁ ଯାଇଚି ଯେ, କୌଣସି ସଭ୍ୟତା ତାକୁ ଉପାଡ଼ି ଫୋପାଡ଼ି ଦେଇପାରି ନାହିଁ । ତେବେ ଆଜି ଭାରତର ଏକତା ବିଷୟରେ ସନ୍ଦେହ ହେଉଚି କାହିଁକି ? ଗଦେଇର ମନେ ପଡ଼ିଲା, ଉପନିଷଦରେ ଅଛି, ଯିଏ ଖାଲି ଜଙ୍ଗଲ ଦେଖେ ଗଛ ଦେଖେ ନାଇଁ ସିଏ ଯେମିତି ନଷ୍ଟ, ଯିଏ ଖାଲି ଗଛ ଦେଖି ଜଙ୍ଗଲ ଦେଖେ ନାଇଁ ସିଏ ବି ସେମିତି ନଷ୍ଟ । ଆଜିର ନେତାମାନେ ଜଙ୍ଗଲ ଆଉ ଗଛର ସମ୍ପର୍କ ଭୁଲିଯାଇଛନ୍ତି । ଜଙ୍ଗଲ କାଟି କାଟି ଯେମିତି ଦେଶକୁ ମରୁଭୂମି କରାଯାଉଚି, ପୁଣି ବୃକ୍ଷରୋପଣ ହେଉଚି, ଏକତାକୁ କାଟି ଟିକି ଟିକି କରି ପୁଣି ତାକୁ ଯୋଡ଼ି ଏକାଠି କରିବା ନିଷ୍ଫଳ ଚେଷ୍ଟା ଚାଲିଚି । ଇଏ ଖାଲି ଆଖି ଦେଖାଣିଆ ଲୋକ ଭୁଲାଣିଆ ଚାଲ । ଆମ ଏକତା ବଜାୟ ଅଛି । ଆମେ ତାର ସ୍ୱରୂପ ଭୁଲିଯାଇଚୁ । ଆଜି କିଏ ଭାରତୀୟ ଏକତାର ବିଶ୍ୱରୂପ ଦେଖେଇବ ?

ସଭାରେ ଅନର୍ଗଳ ବକ୍ତୃତା ଚାଲିଚି । ବାହାରେ ମାଇକରେ ଭସାଭସା କଥା କାନରେ ବାଜୁଛି । ଆମ ଦେଶରେ ଏତେ ଭାଷା ଆମ ବିକାଶରେ ବାଧା । ଆମ ଦେଶରେ ଏତେ ଜାତି ଆମ ବିକାଶରେ ବାଧା । ଏତେ ଭିନ୍ନ ଭିନ୍ନ ସଂସ୍କୃତି ଆମ ବିକାଶରେ ବାଧା । କ'ଣ ଏ ବିକାଶ ଯାହା ସବୁ ସଂସ୍କୃତିକୁ ନଷ୍ଟ କରି ଏକ କରିଦେବାକୁ ଚାହେଁ ? ସବୁ ଭାଷାକୁ, ସବୁ ଜାତିକୁ ଲୋପ କରି ତାରି ମଶାଣି ଉପରେ ଆପଣା ଜୟ ଘୋଷଣା କରିବାକୁ ଚାହେଁ । ଏ ବିକାଶ ଲୋକଙ୍କ ପାଇଁ ନା ଲୋକେ ବିକାଶ ପାଇଁ ? ସବୁ ଇଂରାଜୀଭାଷୀ ଲୋକଙ୍କ ଭିତରେ କଣ ଏକତା ଅଛି ? ବିଲାତ, ଆମେରିକା, କାନାଡ଼ା, ଅଷ୍ଟ୍ରେଲିଆ ଆପଣା ଆପଣା କଥା ବି ବେଳେବେଳେ ବୁଝି ପାରୁନାହାନ୍ତି । ଅଥଚ ସମସ୍ତେ ଇଂରାଜୀଭାଷାଭାଷୀ । ଯେତେଲୋକ ଚୀନ ଭାଷା କହୁଛନ୍ତି ସେମାନଙ୍କର କଣ ଏକତା ଅଛି ? ଲୋକତନ୍ତ୍ର ଚୀନ୍, ତାଇୱାନ, ହଂକଂ, ସିଙ୍ଗାପୁର ଚୀନା ମାନଙ୍କର ଅବସ୍ଥା, ଉଦ୍ଦେଶ୍ୟ ଆଉ ଗତିପଥ ଭିନ୍ନ । ସବୁ ମୁସଲମାନଙ୍କର ଏକତା କଣ ଅଛି ? ମଧ୍ୟପ୍ରାଚ୍ୟରେ ମୁସଲମାନ ରାଜ୍ୟ ଆପୋଷରେ ଲଢୁଛନ୍ତି । ଇରାକ ଇରାନ ମୁହଁ ଚାହୁଁନାହିଁ କି ମିଶର ସିରିଆ ସାଙ୍ଗରେ କଥାଭାଷା କରୁନାହିଁ ।

ଗୋଟିଏ ଭାଷା, ଗୋଟିଏ ଧର୍ମ ହୋଇଗଲେ ଯଦି ଏକତା ହୋଇ ଯାଉଥାନ୍ତା ତେବେ ଆପଣାଛାଏଁ ଲୋକେ ସବୁ ଛାଡ଼ିଛୁଡ଼ି ଏକ ହୋଇଯାଉଥାନ୍ତେ । ଜୋର ଜବରଦସ୍ତ ସମସ୍ତଙ୍କୁ ଏକ କରିବା ଦରକାର ପଡ଼ନ୍ତା ନାହିଁ ।

ଦେଶକୁ ଭାଙ୍ଗିରୁଜି ଏକତା ଆଣିବା ଭାରତୀୟ ସଂସ୍କୃତିର ବିରୋଧୀ । ଏଠି ଭିନ୍ନତା ହେଉଛି ଏକତାର ମୂଳ । ଜଣ ହେଉଚି ଗଣର ଶକ୍ତି । ଇଉରୋପରେ ଜଣକୁ ଗଣରୁ ବିଚ୍ଛିନ୍ନ କରି ଦେଖିବାରେ ସିଏ ନିଜକୁ ନିଜଘରେ ବିଦେଶୀ ବୋଲି ଭାବିଚି । ପୁଣି ଗଣରେ ଜଣକୁ ଭୁଲି ଯିବାରୁ ମଣିଷର ମଣିଷପଣିଆ ହଜିଯାଇଚି ଦଳ ଆଉ ଗୋଷ୍ଠୀ ମାନସ ଭିତରେ । ଭାରତରେ ସବୁ ସାନ ସାନ ଗୋଷ୍ଠୀର ପରିଚୟ ସ୍ୱୀକାର କରି, ସବୁ ମତକୁ ସମ୍ମାନ କରି ଯେଉଁ ଭାରତୀୟତ୍ୱ ବା ହିନ୍ଦୁ ସଂସ୍କୃତିର କଳ୍ପନା କରାଯାଇଥିଲା, ସେଇଥିଯୋଗୁଁ ଏ ସଭ୍ୟତା, ସଂସ୍କୃତି ଦୀର୍ଘସ୍ଥାୟୀ ହୋଇପାରିଚି ।

ବିଭିନ୍ନତାରେ ଯେଉଁ ଏକତା ତାହା ଏକରୂପତାର ଏକତାଠାରୁ ଭିନ୍ନ । ଏଇ ସାଧାରଣ କଥାଟି ଆମେ ଭୁଲି ଯାଇଥିବାରୁ ଆଜି ଚାରିଆଡ଼େ ଏକତାର ଖୋଜା ଚାଲିଛି ।

ଗଦେଇ ଭାବୁଚି ଆମ ଶିକ୍ଷା, ସଂସ୍କୃତି ଉପରେ ଏକରୂପତା ନ ଲଦି କିପରି ଏକତା ରଖିହେବ, ଏ ବିଷୟରେ ବିଚାର ହେଉନାହିଁ କାହିଁକି ? ବୟେ ଆଉ ବସ୍ତରରୁ ଆସିଥିବା ପିଲା ଏକାବହି ପଢ଼ି, ଏକା ପଦ୍ଧତି ଅନୁସରଣ କରି ଏକ ସମୟସୀମା ଭିତରେ ଏକା ପରୀକ୍ଷା ପାଶ କରିବା କଣ ସମ୍ଭବ ? ବିଭିନ୍ନ ପଦ୍ଧତିରେ ବିଭିନ୍ନ ବହି ବ୍ୟବହାର କରି ଏକାସ୍ତରକୁ ଆସିବା ବିଚାର ବଦଳରେ ଦେଶରେ ଏକରୂପୀ ଶିକ୍ଷା ବ୍ୟବସ୍ଥା ଲଦିବା ପାଇଁ ଚେଷ୍ଟା ହେଉଚି କାହିଁକି ? ଶିକ୍ଷାରେ ଯାହା ଶାସନରେ ସେଇଆ । ଯଦି ପଶ୍ଚିମୀ ଶାସନ ପଦ୍ଧତିକୁ ଆମ ଉପରେ ନଲଦି, ଆମ ବହୁ ଭାଷା, ବହୁ ଜାତି, ବହୁ ସଂସ୍କୃତି ସମାଜକୁ ସୁହାଇଲା ପରି ଚଉଖୁଣ୍ଟା ଶାସନ ବ୍ୟବସ୍ଥା ହୁଅନ୍ତା ଆଉ କ୍ଷମତା ସବୁଠୁ ବେଶୀ ତଳସ୍ତରରେ ରହନ୍ତା ତେବେ ତ ଆଉ ନକଲି ଏକତା ପାଇଁ ଚେଷ୍ଟା କରିବାକୁ ପଡ଼ନ୍ତା ନାଇଁ । ଆଜିକାଲି ରେଡ଼ିଓ ଟେଲିଭିଜନରେ ଯେଉଁ ଭାଷାରେ ଏକତା ବିଷୟରେ କୁହାଯାଉଚି ତା କେତେ ଲୋକଙ୍କ ପାଖରେ ପହଞ୍ଚୁଚି ? ଲୋକଙ୍କ ଭାଷାରେ ଲୋକଙ୍କ ସମସ୍ୟାର ବିଚାର ହେଉନାଇଁ କାହିଁକି ? ଏମିତି କେତେ ପ୍ରଶ୍ନ ଆଜି ଗଦେଇକି ଅସ୍ଥିର କରୁଚି । ସବୁ ପ୍ରଶ୍ନର ଜବାବ ତା ପାଖରେ ନାଇଁ । ତେବେ ତାର ବିଶ୍ୱାସ ଯଦି ଏଇ ପ୍ରକାର ପ୍ରଶ୍ନ ଲୋକଙ୍କ ଆଗରେ ଥୁଆ ହେବ ଆଉ ଲୋକେ ଏ ବିଷୟରେ ବିଚାର ଆଲୋଚନା କରିବେ, ତେବେ ନିଶ୍ଚୟ ଗୋଟାଏ ବାଟ ଫିଟିଯିବ । ଭାରତୀୟ ଏକତା ଓ ଭାରତୀୟ ସଂସ୍କୃତି ପରସ୍ପର ନିର୍ଭର ହୋଇ ଆପଣା ଇଜ୍ଜତ, ଆପଣା ଗୌରବ ରଖିପାରିବେ ।



# ବିକାଶ

ଆଜିକାଲି ଗାଁରଆଡ଼େ 'ବିକାଶ' ନାଁରେ ହୁରି ପଡ଼ିଛି । ଇଏ ଆମ ଦାମ ଦାସଙ୍କ ପୁଅ ବିକାଶ ନୁହଁ । ତମର ମନେ ଥିବ, ଦାମ ଦାସେ ଯେଉଁଦିନ ପେସ୍କାର ହେଲେ ସେଇଦିନ ତାଙ୍କ ପୁଅ ହେଇଥିବାରୁ ଆପଣା ବଡ଼ତିକୁ ସବୁଦିନ ପାଇଁ ମନେ କରେଇବାକୁ ପୁଅ ନାଁ ଦେଲେ ବିକାଶ । ଲାଞ୍ଚ, ରିସପତ ନେଇ ଧରାପଡ଼ି ଦାମ ଦାସଙ୍କ ପେସ୍କାରୀ ଗଲା । ବିକାଶ ଇସ୍କୁଲ ଡେଇଁ ପାରିଲା ନାଇଁ । ନାଁଟା କିନ୍ତୁ ତାକୁ ବଳ ଦେଲା । ପିତୃଅର୍ଜିତ ବି ଏକର ନାଳକୁଳିଆ ଜମିରେ ମାଟି ସାଙ୍ଗରେ ଯୁଝି ସିଏ ପରିବାରର ମହତ ରଖିଲା । ଏବେ ଗାଁ ପଞ୍ଚାୟତରେ ମାତିଚି । ଲାଞ୍ଚ ରିସପତରେ ଜଣକର ବିକାଶ ନହୋଇ ଗାଁର କେମିତି ଉନ୍ନତି ହେବ ସେଇଥିରେ ତାର ମନ । ପଚାରିଲେ କେବେ କେମିତି କହେ, ଇଏ ପାପର ପ୍ରାୟଶ୍ଚିତ ।

ସେଦିନ ଗାଁକୁ ବ୍ୟାଙ୍କବାଲା ଆସିଥାନ୍ତି । ଗାଁରେ ନୂଆ ବ୍ୟାଙ୍କ ଖୋଲିବ । ଆଜିଯାଏ ଗାଁ ଛେଉଣ୍ଡ ହୋଇଥିଲା । ବ୍ୟାଙ୍କ ଗୋଟିଏ ଗୋଟିଏ ଗାଁକୁ ଆଦରିବେ । ଗାଁରେ ବିକାଶ ପାଇଁ ସବୁମନ୍ତେ ଚେଷ୍ଟା କରିବେ । ଗାଁରେ ଶହେ ଚାଳିଶି ଘର । ପ୍ରତିଘର ପିଛା ହଜାରେ ଟଂକା ଲେଖାଏ ବିକାଶ ଋଣ ଦେଖାଯିବ । ସବୁଆଡ଼େ ହସଖୁସି । ବ୍ୟାଙ୍କ ଖୋଲା ହେଲା । ପରଦିନ ବିପିନ ପଟ୍ଟନାୟକଙ୍କ ଝିଅ ବାହାଘର । ହଜାରେ ଟଂକା ସେଇଥିରେ ଖପିଗଲା । ତା ଆରଦିନ ବ୍ୟଞ୍ଜନ ଦ୍ୱାଦଶୀ । ମାହାନ୍ତିଙ୍କ ଦେଉଳରେ ମଉଛବ । କାହାର ଝିଅ ବିଭା ଓ କାହାର ଦିହ ଅସୁବିଧା । ହଜାରେ ଟଂକା କେତେଦିନ ବା ରହନ୍ତା ? ଗହୁଁ ବର୍ଷକେ ଚାଲିଗଲା । ପୁରା ଗାଁର ସୁଧ କୋଡ଼ିଏ ହଜାର । ସମସ୍ତଙ୍କର ଲାଳେଣୀ ।

ପୁରୁଣା କାଳରେ ଋଣ ନକରୁଥିବା ଲୋକ ସମାଜରେ ମାନ୍ୟ ବୋଲି ଗଣା ହେଉଥିଲେ । ବ୍ୟାଙ୍କ ଆସିବା ଦିନୁ ଋଣ ନକରୁଥିବା ଲୋକଙ୍କୁ ବୋକା ବୋଲି ଗଣା ହେଉଚି । ଆଉ ଯିଏ ଋଣ ନେଇ ନସୁଝି ରାଜନୈତିକ କାରସାଦାରୁ ଋଣ କଟେଇ ଦେଇପାରୁଛି ତାକୁ ଚାଲାକ ଚତୁର ବୋଲି କୁହାହେଉଚି । ମାହାନ୍ତିଙ୍କର ପୁରୁଣା ଘର । ମାହାନ୍ତି ଯେତେବେଳେ ଠିକଣା ଦିନ ସୁଧ ଦେଇ ନପାରିଲେ ଡିବିଡିବି ଡେଙ୍ଗୁରା ବାଜିଲା । ଘର କୋରଖ୍ ହେବ । ଇଏ କି ବିକାଶ ଯୋଉଠି ମଣିଷର ମାନ ଥାନ ନାଇଁ ? ସମସ୍ତେ ଆପଣା ଆପଣା ମୁହଁକୁ ଚାହୁଁଛନ୍ତି । ହେଲେ ଯେମିତି ପୁରୁଣା ପରିଚୟ ଝାପ୍ସା ହେଇ ଆସୁଚି । ନୂଆ ଆଲୁଅ ଫିଟି ନାଇଁ ।

ଗାଁରେ ଯେ କିଛି ବଡ଼ତି ହେଇନାଇଁ ନୁହେଁ । ଗାଁର ଚାରିଜଣ ଯୋଗାଡ଼ କରି କୁଏଟ ଚାଲିଗଲେ । ପ୍ରତିଥର ଆସିଲା ବେଳକୁ ରେଡ଼ିଓ, ଘଣ୍ଟା, ପ୍ଲାଷ୍ଟିକ୍ ସଉପ, ପ୍ଲାଷ୍ଟିକ୍ ଦଉଡ଼ି ଆଉ କେତେ କ'ଣ ଧରି ଆସନ୍ତି । ସେଥିରୁ କିଛି କିଛି ଉଡ଼ାଜାହାଜ ଘାଟିରେ ଲାଞ୍ଚ ଦେଲେ ସୁଦ୍ଧା ବାକି ଯାହା ଆସେ ତାକୁ ଦେଖିବାକୁ ସକାଳ ସଞ୍ଜେ ଗାଁ ବାଲାଙ୍କ ମେଳା ବସେ ।

ଥରେ ଆଠ ବୋତଲ ବିଲାତି ମଦ ଆସିଥିଲା । ପିଲାରୁ ବୁଢ଼ାଯାଏ ସମସ୍ତେ ପ୍ରସାଦ ପାଇଲା ପରି ଟିକିଏ ଟିକିଏ ଚାଖିଲେ । ନାହାକ ବୁଢ଼ା କହିଲେ, ବୁଝିଲ ପିଲାଏ, ଇଏ ସ୍କଟଲାଣ୍ଡର ପାଣି । ଏଇଆକୁ ପିଇ ବିଲାତ ଲୋକେ ଏତେ ବଳୁଆ ହେଲେ ଯେ, ଆମ ଉପରେ ରାଜୁତି କରୁଥିଲେ । ଦେଖ, ଏଇମାନେ ଆସିଲାବେଳେ ସହରରେ ବାବୁ ଭାୟାମାନେ ଆମ ଗାଁକୁ ଗସ୍ତରେ ଆସନ୍ତି ଖାସ୍ ଏଇ ବିଦେଶୀ ମଦ ପାଇଁ । ସମସ୍ତେ ଚୁପ୍ ରହିଲେ ।

ବିକାଶ ଭାବୁଚି ସିଏ ବି ପୁରୁଣା ହେଇଯାଉଚି । ଗାଁ ପଞ୍ଚାୟତ କରି ସିଏ ନାନା ଉନ୍ନତି କଲା । ଗାଁକୁ କୃଷିବାବୁ, ଗଛବାବୁ, ମାଛବାବୁ, ଗାଈମଇଁଷି ବାବୁ, ସାରବାବୁ, ସ୍ୱାସ୍ଥ୍ୟବାବୁ, ଋଣବାବୁ ଏମିତି ଏଗାର ଜଣ ବାବୁ ଆସିଲେ । ପଇସାଦେଲେ ପଇସାନେଲେ । ହେଲେ ଉଚ୍ଚରିଆ ଆଉ ଖାଦ ପାଇ ଜମିରେ ଫସଲ ବଢ଼ିଲା । ଲୋକଙ୍କ ହାତକୁ ଦି ପଇସା ଆସିଲା । ପଇସା ଆସିବା ସଂଗେ ସଂଗେ ପିଲାଙ୍କର ସିନେମା ରୋଗ ବଢ଼ିଲା । ଗାଁ ମୁଣ୍ଡରେ ମଦ ଦୋକାନ ଫିଟିଲା । ନିଧି ସାହୁଙ୍କ ବରା, ଗୁଲୁଗୁଲା, ଜିଲ୍‌ବି ଗାଉଁଲି ବୋଲି ଲୋକେ ନାକ ଟେକିଲେ । କେରଳରୁ ଜାକା ଆସି ଗାଁରେ ଢ଼ାବା ଖୋଲିଲେ । ବିକାଶ ପଚାରେ ଇଏ କଣ ବିକାଶ ?

ସେଦିନ ଗାଁ ପଞ୍ଚାୟତ ବସିଥିଲା । ତନ୍ତସାଇର ଝିଅ ଫେରାଦ କରିଚି ସେନାପତିଙ୍କ ପୁଅ ତାକୁ ପେଟରେ କରିଚି । ଏତେ ବଡ଼ ବଡ଼ଙ୍କ ଆଗରେ ସେନାପତିଙ୍କ ପୁଅ ଯୋଡ଼ାଏ ଶହେ ଟଂକିଆ ନୋଟ ଫୋପାଡ଼ି ଦେଲା । ତନ୍ତସାଇ ଝିଅ କହିଲା ଦି ଶହରେ ହବ ନାଇଁ । ଆଉ ଦି ଶହ ଦିଅ । ପୁଅ ଆଉ ଗୋଟାଏ ଶହେ ଟଂକିଆ ନୋଟ ଫୋପାଡ଼ି ଦେଇ କହିଲା ଯଦି ଏତିକିରେ ନୋହିଲା, ତେବେ ଯା ମୋ ନାଁରେ ମକଦ୍ଦମା କରିବୁ । ଝିଅଟି ଶହେ ଟଙ୍କା ଉଠେଇ ନେଇ ହସି ଦେଇ କହିଲା, ପୁଣି ତିନିଶ ଟଂକା ହେଲେ ମୋ ପାଖକୁ ଆସିବ । ବୁଢ଼ା ବୁଢ଼ୀ ମାନେ କାନରେ ହାତ ଦେଲେ । ଏମିତିଆ କଥା ଶୁଣା ନଥିଲା । ବିକାଶ ମନକୁ ବହଲେଇଲା, ଯାହାହେଉ, କଚେରୀକି ଯିବା ତ ବନ୍ଦ ହେଲା ।

ଲକ୍ଷ୍ମୀଧର ଗାଁର ସବୁଠୁ ପାଠୁଆ ପିଲା । ସହରରେ ଏତେ ବଡ଼ ଚାକିରୀ କରିଥିଲେ ବି ଗାଁକୁ ଆସିଲେ ଗୋବିନ୍ଦ ବେହେରା, ନିଧି ସାହୁ, ହାଡ଼ୁ ସାନ୍ତ ଆଉ ମହନମିଶ୍ରଙ୍କୁ ଦଣ୍ଡବତ କରିବା ଧାର୍ଯ୍ୟ । ପାଠ ନ ପଢ଼ନ୍ତୁ ପଛେ ଏମାନେ ଗାଁର ପୁରୁଣା ଲୋକ । ଲକ୍ଷ୍ମୀଧର କହନ୍ତି, ବୁଝିଲେ ଆଜ୍ଞାମାନେ, ବିକାଶ କଣ ଏ ବିଷୟରେ ବଡ଼ବଡ଼ ପାଠୁଆମାନେ ଅନ୍ଧଗଳିରେ ହରାଣ୍ଡି ହେଉଛନ୍ତି । ଆଗେ ପଣ୍ଡିତମାନେ କହୁଥିଲେ ଯେ ହାରାହାରି ଆୟ ବଢ଼ିଲେ ବିକାଶ ହେଲା ବୋଲି ଧରାଯିବ । ହେଲେ ଯଦି ଜଣେ ଆୟ ଦୃଷ୍ଟିରୁ ତାଳଗଛ ଆଉ ଅନେଶ୍ୱତ ଜଣ ଦୁବ, ତେବେ ହାରାହାରି ଆୟ ବଢ଼ିବାକୁ କ'ଣ ଏ ସମାଜର ବିକାଶ ବୋଲି କୁହାଯିବ ? ପୁଣି ଯଦି ଧରାଯାଏ ଯେ ସବୁ ଲୋକଙ୍କର କିଛି କିଛି ବଢ଼ୁତି ହେଇଚି ଅଥଚ ଗାଁରୁ ନୀତି ଅନୀତି ବିଚାର ଚାଲି ଯାଇଚି, ମଦ ମାଇକିନିଆରେ ଲୋକେ ମାତିଛନ୍ତି ତେବେ ଯାକୁ

କ'ଣ ବିକାଶ କୁହାଯିବ ? ବିକାଶର ମାପକାଠି କ'ଣ ଏଥିପାଇଁ ପୃଥିବୀ ସାରା ଚହଳ ପଡ଼ିଚି ।

ବାବନ ଦାସେ କହିଲେ, ଆଜିକାଲି ସଭିଏଁ ଗାନ୍ଧୀବୁଢ଼ା କଥା ଭୁଲିଗଲେଣି । ଗାନ୍ଧୀ କହୁଥିଲେ ଗାଁର ବିକାଶରେ ଭାରତର ବିକାଶ । ସେତେବେଳେ ସାମ୍ୟବାଦୀମାନେ ମାର୍କ୍ସଙ୍କ କଥାକୁ ଦୋହରେଇ କହୁଥିଲେ ଗାଁ ସମାଜ ବିକାଶ ବିରୋଧୀ । ଏ ବିଷୟରେ ଆମ ଦେଶରେ ଯେପରି ବିଚାର ହେବା କଥା ହେଲାନାଇଁ କାହିଁକି ?

ଲକ୍ଷ୍ମୀଧର କହିଲେ, ପଶ୍ଚିମୀ ମାପରେ ଆଗେଇବାକୁ ଆମେ ବିକାଶର ମାପକାଠି ବୋଲି ଧରିନେଲୁ । ଆରିଷ୍ଟଟଲ, ପ୍ଲାଟୋଙ୍କ ପରି ପଶ୍ଚିମ ଦେଶର ପଣ୍ଡିତ ଗ୍ରୀକ ସହର ସଭ୍ୟତାକୁ ଆଦର୍ଶ ମାନି କହିଲେ ଯେ ନଗରୀ ସଭ୍ୟତା ବିଷୟରେ ନଜାଣିଲେ ବିକାଶ ଜାଣିବା ଅସମ୍ଭବ । ଆମେ ତାଙ୍କରି ପାଠ ପଢ଼ି ତାଙ୍କ ସାଙ୍ଗରେ କଣ୍ଠ ମିଳେଇ ଦୋହରେଇଲୁ ସହର ସଭ୍ୟତା ହେଉଚି ବିକାଶର ମାପକାଠି । ଭାରତର ପାଞ୍ଚଲକ୍ଷ ଗାଁକୁ ସହର କରିବା । ତେଣୁ ଗାଁରୁ ସହରକୁ ଯିବାର ଭିଡ଼ ବଢ଼ିଲା । ସହର ଭିତରେ ଗାଁ ବସିଲା । ସହର ଦିନକୁ ଦିନ ଗନ୍ଧିଆ, ପୋଚରା ହେବାକୁ ଲାଗିଲା । ବିଷାକ୍ତ ପାଣି, ପବନ ଆଉ ଆପଣା ତାତିରେ ଭିତରେ ଭିତରେ ସଡ଼ିବାକୁ ଲାଗିଲା । ଆମେ ଆପଣାର ଅଜଣା ଅତୀତ ଆଉ ଅନିଶ୍ଚିତ ଭବିଷ୍ୟତ ଭିତରେ ହାବୁଡୁବୁ ଖାଇ ଏ କୂଳକୁ ହେଲୁନାଇଁ କି ସେ କୂଳକୁ ହେଲୁନାଇଁ ।

ନୂଆ ମା କହିଲେ, ବୁଝିଲ ପିଲାଏ, ତମ ବିଲୁଆ ବିଚାର ଶୁଣି ମୋର ପିଲାଦିନର ଗୋଟିଏ ଗପ ମନେ ପଡୁଚି । ରଜାପୁଅ, ମନ୍ତ୍ରୀପୁଅ, ସାଧବପୁଅ, କଟୁଆଳ ପୁଅ ଭବିଷ୍ୟତ ଗଢ଼ିବାକୁ ଆପଣାକୁ ତିଆରି କରିବାକୁ ବିଦେଶ ଗଲେ । ନାନା ବିଦ୍ୟା ଶିଖିଲେ । ହେଲେ ବିଦ୍ୟା ସାଙ୍ଗରେ ଯୋଉ ବିଷୟ ଦରକାର ତା ଶିଖିଲେ ନାଇଁ । କଥା ଥିଲା, ବର୍ଷେପରେ ବାଟରେ ଗୋଟିଏ ସରାଇରେ ସେମାନେ ଭେଟିବେ ଆଉ ଆପଣା ଆପଣା ବିଦ୍ୟାର ପରଖ ଦେଇ ତା ପରେ ରାଜ୍ୟକୁ ଫେରିବେ । ଚାରିହେଁଯାକ ଫେରିଲେ ! କଥା ନହସରେ ଦିନ କଟିଗଲା । କଥା ହେଲା ରାତି ଚାରିପହର ଜଣେ ଜଣେ ପହରା ଦେବେ । ପ୍ରଥମ ପହର ରଜାପୁଅର ପହରା । ବସି ବସି ଅଳସ ଲାଗିବାରୁ ସିଏ ଖଡ଼ିଧରି ଗୋଟିଏ ବାଘର ରେଖାଚିତ୍ର ଆଙ୍କିଲା । ଦ୍ୱିତୀୟ ପହରରେ ମନ୍ତ୍ରୀପୁଅ ଏଇ ସୁନ୍ଦର ଚିତ୍ରଟିକୁ ଆଖିଛଡ଼ା ବାକି ସବୁ ଅଙ୍ଗ ପ୍ରତ୍ୟଙ୍ଗ ଯୋଡ଼ି ପୂର୍ଣ୍ଣ କରିଦେଲା । ବାଘର ବାଘ ପଣିଆ ଝଲସି ଉଠିଲା । ସାଧବ ପୁଅ ଆପଣା ବିଦ୍ୟା ବଳରେ ବାଘଠି ହାଡ଼, ମାଂସ, ରକ୍ତ ସବୁ ଲଗେଇ ଦେଲା । ବାଘ ଜୀଅନ୍ତା ପରି ଦିଶିଲା । ଶେଷ ପହରକୁ କଟୁଆଳ ପୁଅର ପାଳି । ସେ ଯେମିତି ବାଘର ଆଖି ଦେଇଚି ବାଘର ଜୀବନ୍ୟାସ ହେଲା, ଆଉ ବାଘ ଡେଇଁ ପଡ଼ି ଚାରିଜଣଙ୍କୁ ମାରିଦେଲା । ଏଇ ଚାରିଜଣ ଆପଣା ବିଦ୍ୟାର ବଡ଼ତିରେ ଆପେ ମଲେ । ତମେ ସବୁ ଯାହାକୁ ବିକାଶ କହୁଚ ଇଏ

ସେମିତି କଥା । ଯଦି ଯୋଉମାନେ ଦାୟିତ୍ୱରେ ଅଛନ୍ତି ଠିକ୍ ବାଟରେ ନଯାଆନ୍ତି, ତେବେ ବିକାଶ କେବଳ ସେଇମାନଙ୍କୁ ନୁହ, ସାରା ସମାଜକୁ ହାନି ପହଞ୍ଚେଇବ । ତେଣୁ ତମେମାନେ କିଛି କରିବା କି କହିବା ଆଗରୁ ଆପଣା ପରମ୍ପରାକୁ ଭାବି ବିଚାରି ବୁଝ । ଅତୀତରେ ବାନ୍ଧି ହୋଇ ବିକାଶ ଯେମିତି ଅସମ୍ଭବ, ଅତୀତକୁ ସମ୍ପୂର୍ଣ୍ଣ ଛାଡ଼ି ଦେଇ ବିକାଶ ସେଇପରି ଅସମ୍ଭବ ।



# ହିନ୍ଦୁ ଧର୍ମ

ମହନ ମିଶ୍ରେ କହିଲେ, ଇଏ କଳିକାଳ । ଏ କାଳରେ ଧର୍ମ ଏକ ପାଦରେ ବି ନାହିଁ । ଧର୍ମ ଲୋପ ନୋହିଥିଲେ ପାପୀ, ଅଧର୍ମୀ କ'ଣ ଉଧୋଉଥାନ୍ତେ ? କଥାରେ ଅଛି, ସର୍ବେ ହୋଇବେ ଏକାକାର, ନଥିବ ଭେଦର ବିଚାର ।

ଜୟୀମିଶ୍ରେ କହିଲେ, ଧର୍ମ ଅଧର୍ମ ଯୁଦ୍ଧ ସବୁ କାଳରେ ଲାଗି ରହିଚି । ସତ୍ୟଯୁଗରେ କଣ ଅଧର୍ମ ନଥିଲା ? ସତ୍ୟଯୁଗରେ ବେଶୀ ସତୁଆ ଥିଲେ । ସତର ଜୟ ହେଉଥିଲା । ଏ କାଳରେ ମିଛୁଆ ବେଶୀ । ସେଥିପାଇଁ ମିଛ, ଅଧର୍ମର ଜୟ ।

ବାଞ୍ଛା ଭଣ୍ଡାରୀ ପଚାରିଲା, ଆଜ୍ଞା ଧର୍ମ କଣ ? ଖ୍ରୀଷ୍ଟିୟାନ ପାଦ୍ରୀ ସେଦିନ କହିଗଲେ ଯିଶୁ ଈଶ୍ୱରଙ୍କ ପୁତ୍ର । ଖ୍ରୀଷ୍ଟିଆନ ଧର୍ମ ସବୁ ଧର୍ମର ସାର । କରଡାପଲ୍ଲୀ ମୌଲବୀ କହନ୍ତି ଇସଲାମ ସବୁ ଧର୍ମରୁ ବଡ଼ । ବିହେଁ ହିନ୍ଦୁ ଧର୍ମକୁ ଗାଳିଦେଲେ । ଆମେତ ହିନ୍ଦୁ । ଆମେ ବି ହିନ୍ଦୁ ଧର୍ମ କଣ ଜାଣୁ ନାହିଁ ।

ବାବନ ଦାସେ କହିଲେ, ଖବର କାଗଜ ଦେଖ । ହିନ୍ଦୁ ଶିଖ, ଶିଖ ନିରଙ୍କାରୀ, ସିଆ ମୁସଲମାନ ସୁନ୍ନୀ ମୁସଲମାନ ପରସ୍ପର ସାଙ୍ଗରେ ଲଢୁଛନ୍ତି । ଏଥିରେ ଧର୍ମ ବିଚାର କରିବ କ'ଣ ? ଜୟୀମିଶ୍ରେ କହିଲେ, ଇଂରାଜୀରେ ରିଲିଜିଅନ କହିଲେ ପଶ୍ଚିମରେ ଲୋକେ ଯାହା ବୁଝନ୍ତି ଆମ ଧର୍ମ ତା ଠାରୁ ଭିନ୍ନ । ତମେ ଗାଁକୁ ଯାଅ ଶୁଣିବ ଭୋକିଲାକୁ ଖୁଆଇବା, ଶୋଷିଲାକୁ ପାଣି ଦବା ଧର୍ମ । ବୁଢ଼ା ବୁଢ଼ିଙ୍କ ଦେଖାଶୁଣା କରିବା ଧର୍ମ । ଅନ୍ଧକୁ ବାଟ କଢ଼େଇବା ଧର୍ମ । ଜ୍ଞାନ ବାଣ୍ଟିବା ଧର୍ମ । ଧର୍ମ ଏଠି କର୍ତ୍ତବ୍ୟ । ଯେଉଁ ନୀତି ନିୟମ ଦ୍ୱାରା ସମାଜର ବିଭିନ୍ନ ଅଙ୍ଗ ଏକାଠି ବାନ୍ଧି ହୋଇ ରହନ୍ତି, ତାହା ଧର୍ମ ।

ଶାସନୀ ବାଲୁ ମାହାପାତ୍ରେ କହିଲେ, ଜୟୀ ମାଷ୍ଟର ଲାଖ୍ କଥାଟାଏ କହିଲେ । ଧୃ ଧାତୁରୁ ଧର୍ମ ଶବ୍ଦର ସୃଷ୍ଟି । ଧାରଣ ବା ଧରିରଖିବା ନୀତି ନିୟମ ହେଲା ଧର୍ମ । ଆମ ପୁରାଣରେ ଅଛି ବାସୁକୀର ଫଣା ସେତେବେଳେ ଦୋହଲେ ଯେତେବେଳେ ପାପର ଭାର ବେଶୀ ହୁଏ । ଆମ ହିନ୍ଦୁ ଧର୍ମ ଯୋଉ ପୃଥିବୀର କଳଣା କରିଚି, ସେଥିରେ ମୁସଲମାନ,

ଖ୍ରୀଷ୍ଟିଆନ, ୟହୁଦୀର ସମସ୍ତେ ସାମିଲ । ସମସ୍ତଙ୍କ ଧର୍ମକୁ ଶ୍ରଦ୍ଧା କରିବା ହିନ୍ଦୁଧର୍ମର ମୂଳ କଥା । ସେଇଥିପାଇଁ ଭାରତବର୍ଷ ଶକ, ହୁନ, ପାରସିକ, ଚୀନ, ସମସ୍ତଙ୍କୁ ଆଦରରେ ଆପଣାର କରିଚି । ମନୁ କଣ ମିଛରେ କହିଛନ୍ତି, ଏ ଦେଶର ଅଗ୍ରଜନ୍ମାମାନଙ୍କ ଠାରୁ ପୃଥିବୀର ସବୁ ଲୋକେ ଆପଣା ଚରିତ୍ର ଶିଖିବେ ?

ଲକ୍ଷ୍ମୀଧର କହିଲେ, ମାହାପାତ୍ରେ ଯାହା କହିଲେ ତହିଁରେ ଅନେକ ସାର କଥା ଅଛି । ପୁରାଣ କଳ୍ପନାର ବାସୁକୀକି ବାଦ ଦେଲେ ବି ସବୁଧର୍ମ ପ୍ରତି ଶ୍ରଦ୍ଧା ବିଷୟରେ ମାହାପାତ୍ରଙ୍କ କଥା ବିଚାର କରିବାର ଅଛି । ହିନ୍ଦୁ କିଏ ? ହିନ୍ଦୁ ମାନଙ୍କର ବାରୋଟି ଦର୍ଶନ ଶାସ୍ତ୍ର ଅଛି । ସେଥିରୁ ଛ'ଟି ଈଶ୍ୱରରେ ବିଶ୍ୱାସ କରନ୍ତି । ଛଟି ଈଶ୍ୱର ଥିବା ଅସ୍ୱୀକାର କରନ୍ତି । ଚର୍ବାକ ଦର୍ଶନରେ କୁହାଯାଇଚି, ଯେତେଦିନ ବଞ୍ଚିବ ସୁଖରେ ବଞ୍ଚିବ; ଋଣ କରି ଘିଅ ପିଇବ । ଥରେ ମରିସାରି ପୋଡ଼ା ହେଲେ ପୁନର୍ଜନ୍ମ ହେବ କେଉଁଠୁ ? ଯୋଉମାନେ ଈଶ୍ୱର ବିଶ୍ୱାସ କରନ୍ତି ଆଉ ଯିଏ ଈଶ୍ୱରଙ୍କୁ ଅସ୍ୱୀକାର କରନ୍ତି, ସଭିଏଁ ହିନ୍ଦୁ । ପୁଣି ଈଶ୍ୱର ବିଶ୍ୱାସୀଙ୍କୁ ଦେଖନ୍ତୁ । ଗୋଟିଏରେ ବିଶ୍ୱାସ କରୁଥିବା, ଦୁଇ ବା ତିନି ଈଶ୍ୱରରେ ବିଶ୍ୱାସ କରୁଥିବା ଲୋକଙ୍କଠୁ ଆରମ୍ଭ କରି ତେତିଶ କୋଟି ଦେବଦେବୀରେ ବିଶ୍ୱାସ କରୁଥିବା ସମସ୍ତେ ହିନ୍ଦୁ । କାଠ, ପଥର, ପଶୁ, ମଣିଷ ସମସ୍ତେ ଦେବତା ଆଉ ଦେବତାଙ୍କର ଅଂଶ ।

ସେଥିପାଇଁ ହିନ୍ଦୁମାନେ ମୁସଲମାନ ଦରଗାରେ ଯେମିତି ପୂଜା କରିବାକୁ ପାପ ବୋଲି ମାନନ୍ତି ନାହିଁ, ଖ୍ରୀଷ୍ଟିଆନ ଗୀର୍ଜାର ଉପାସନାକୁ ଦୋଷ ବୋଲି ମାନନ୍ତି ନାହିଁ । ଜଗନ୍ନାଥ ଦାସ ପରା କହିଛନ୍ତି, ସକଳ ବୈଷ୍ଣବ ପୂଜିବ । ଆପଣା ସୂତ୍ର ନଛାଡ଼ିବ । ଯେତେଦିନ ଯାଏ ସବୁଧର୍ମ ପ୍ରତି ସମନ୍ୱିତ ଦୃଷ୍ଟି ଥିବ, ସେତେଦିନ ଯାଏ ହିନ୍ଦୁର ହିନ୍ଦୁତ୍ୱ ବଜାୟ ରହିଥିବ ।

ଗାଁପଞ୍ଚାୟତରେ ଢେଙ୍କାନାଳରୁ ଢ଼ିକିଶାଳ ଯାଏ କଥା ପଡ଼େ । ସେ ଦିନ ଧର୍ମ ଆଲୋଚନା ଜମି ଯାଇଥିଲା । ମଧୁଆ ଭଣ୍ଡାରୀ ପଚାରିଲା, ଆଜ୍ଞା କଥାରେ ଅଛି ବାରଜାତି ତେର ଗୋଲା, ବଇଷ୍ଣବ ହେଲେ ସବୁ ଗଲା । ସବୁ ବଇଷ୍ଣମଙ୍କୁ ପୂଜା କରିବା କଥା କଣ ? ପୁଣି ଏତେ ଜାତିକିଆ ଲୋକଙ୍କୁ ହିନ୍ଦୁ କରି ବାନ୍ଧିବାରେ କୋଉ ଶାସ୍ତ୍ର ଦାୟୀ ।

ଜୟୀ ମିଶ୍ରେ କହିଲେ, ଆରେ ମଧୁଆ, ତୁ ଇସ୍କୁଲରେ ପାଠ ନପଢ଼ିଲେ କଣ ହେଲା, ଗଣ୍ଠି କଥା ପଚାରିଚୁ । ଭାରତରେ ଯେଉଁ ସମାଜ ବ୍ୟବସ୍ଥା ଗଢ଼ା ହେଇଥିଲା ସେଥିରେ ଚାରିବର୍ଣ୍ଣ ଆଉ ଚାରି ଆଶ୍ରମର କଳ୍ପନା ଥିଲା । ପ୍ରଥମ କେତେବର୍ଷ ବ୍ରହ୍ମଚାରୀ ଜୀବନ କଟେଇଲେ ଯାଇ ମଣିଷର ଗୃହସ୍ଥ ଜୀବନ ସୁଖକର ହୁଏ । ତାପରେ ବାନପ୍ରସ୍ଥ, ସଂସାର ସୁଖରୁ ଆପଣା ମନକୁ ଓଲଟା ଦିଗରେ ଟାଣିବା ବେଳ । ଯତିବ୍ରତ ହେଉଚି ସଂସାରରୁ ଓହରିଯିବା । ସଂସାରରେ ନଥିଲା ପରି । ତେବେ ଯାଇ ଜୀବ ପରମ ଭେଦ ଜାଣିବ ।

ଗୋବିନ୍ଦ ଭଞ୍ଜ କହିଲେ, ବେଦ କଥା କହିଲ ଯେ, ବେଦ ଉପନିଷଦ ସର୍ବମାନ୍ୟ ।

ଖ୍ରୀଷ୍ଟିଆନଙ୍କ ବାଇବେଲ ଆଉ ମୁସଲମାନଙ୍କ କୋରାନ ପରି ଯା ଧର୍ମଗ୍ରନ୍ଥ ନୁହେଁ । ଶିଖମାନଙ୍କର ଗ୍ରନ୍ଥସାହେବ ପରି ଏହା ଗୁରୁ ନୁହେଁ । ବେଦ ଉପନିଷଦ ମନ୍ତ୍ର ଋଷିମାନେ ଦେଖିଥିଲେ, ଲେଖି ନଥିଲେ । ଯେମିତି ବୁଦ୍ଧଙ୍କର ଜ୍ଞାନଲାଭ ହୋଇଥିଲା, ମୋଜେସଙ୍କୁ ଖ୍ରୀଷ୍ଟଧର୍ମର ଦଶ ଅନୁଶାସନ ଦେଖା ଯାଇଥିଲା, ସେଇମିତି କୋଉ ଋଷିଙ୍କି ଏସବୁ ଗ୍ରନ୍ଥ ଅନୁଭବରେ ମିଳିଥିଲା । ଜ୍ଞାନଚକ୍ଷୁ ଯାହାର ଅଛି ସିଏ ତ ଋଷି ।

ହିନ୍ଦୁ ମାନଙ୍କର ଧର୍ମଗ୍ରନ୍ଥ ଅଛି ପୁଣି ନାହିଁ, କିଏ ବେଦ ମାନୁଚି ତ କିଏ ଗୀତା ମାନୁଚି । କିଏ ଭାଗବତ ମାନୁଚି ତ ଆଉ କିଏ ପୁରାଣ ମାନୁଚି । ପୁଣି କିଏ କିଛି ମାନୁନାହିଁ । କିଏ ସଂସ୍କୃତରେ ଲେଖା ପୋଥିକି ମାନ୍ୟ କରୁଚି, କିଏ ଯେ କୌଣସି ଲେଖା ପୋଥିକି ମାନ୍ୟ କରୁଚି, ପୁଣି କିଏ ଶୂନ୍ୟବାଣୀକି ମାନ୍ୟ କରୁଚି । ଏଇଥିପାଇଁ ତ ଆମେ ହିନ୍ଦୁ ।

ଲକ୍ଷ୍ମୀଧର କହିଲେ ଖାଲି ଜଣ ଏତିକ ? ଆଉ ଗୋଟିଏ ଦିଗରୁ ଦେଖ । ଆମ ଦେଶରେ ରାମକୃଷ୍ଣଙ୍କ ପରି ଲୋକ ସିଧାସଳଖ ଆପଣା ଠାକୁର ଠାକୁରାଣୀଙ୍କ ସାଙ୍ଗରେ କଥାବାର୍ତ୍ତା କରନ୍ତି । ଅନେକେ ଖାଲି ପୂଜାରୀ ପୁରୋହିତ ନୁହେଁ, ସବୁ ବ୍ରାହ୍ମଣଙ୍କୁ ନିଜ ଦେବତାଙ୍କ ଭିତରେ ମଧ୍ୟସ୍ଥ ବୋଲି ମାନନ୍ତି । ଆହୁରି ଅନେକେ ମାଳି, ଏମିତି କି ଦେଉଳ ଝାଡୁଦେବା ଲୋକଙ୍କୁ ମଧ୍ୟସ୍ଥ ମାନନ୍ତି । ଆଉ ପଥର କାଠର ଷଣ୍ଢ, ଗରୁଡ଼, ଦ୍ୱାରପାଳ ତ ଅଛନ୍ତି ।

ହିନ୍ଦୁ ହେବାର ଅର୍ଥ ତେବେ ହେଲା ଅପର ଧର୍ମକୁ, ଅପରର ବିଚାରକୁ ମାନ୍ୟତା ଦେବା । ହିନ୍ଦୁ ହେବା ଅର୍ଥ ଭାରତୀୟ ହେବା । ପୁରୁଣା କାଳରେ ଭାରତୀୟ ଆଉ ହିନ୍ଦୁର ଅର୍ଥ ଏକ ଥିଲା । ହିନ୍ଦୁସ୍ଥାନ କହିଲେ ସବୁ ଭାରତୀୟଙ୍କ ଦେଶ । ମୁସଲମାନ, ଖ୍ରୀଷ୍ଟିଆନ, ୟୁହୁଦୀ,ବୌଦ୍ଧ, ଜୈନ, ଶୈବ, ବୈଷ୍ଣବ, ଶାକ୍ତ, ଆଦିବାସୀ ସଭିଏଁ ମିଶି ହିନ୍ଦୁସ୍ଥାନ ।

ଆଚ୍ଛା ଭାବିଲ ଦେଖି ଯିଶୁ ଯଦି ଈଶ୍ୱରଙ୍କ ପୁତ୍ର ସିଏ କ'ଣ ଖାଲି ଖ୍ରୀଷ୍ଟିଆନଙ୍କୁ ବଞ୍ଚେଇବେ ନା ମଣିଷଜାତିକୁ ବଞ୍ଚେଇବେ ? ମହମ୍ମଦ ଯଦି ଆଲ୍ଲାଙ୍କ ପୟଗମ୍ବର ସିଏ ଖାଲି ମୁସଲମାନଙ୍କର ମାନ୍ୟ କି ସବୁ ମଣିଷ ଜାତିର ମାନ୍ୟ ? ଯେଉଁମାନେ ଏପରି ଚିନ୍ତାକରନ୍ତି ସେମାନେ ହିନ୍ଦୁ । ଯେଉଁମାନଙ୍କର ସାନମନ ସେମାନେ ନିଜପର ବିଚାର କରନ୍ତି । ଉଦାର ଚେତା ମଣିଷଙ୍କର ବସୁଧା ହେଉଚି କୁଟୁମ୍ବ ।

ଯେଉଁଠି ଅନ୍ୟାୟ ଅନୀତି କରି ଲୋକଙ୍କ ଭିତରେ ଅପ୍ରୀତି ଆଉ କନ୍ଦଳ ସୃଷ୍ଟି କରାଯାଉଚି ସେଠି ଧର୍ମ ନାହିଁ । ଯେଉଁଠି ଲୋକଙ୍କୁ ମୈତ୍ରୀ ବନ୍ଧନରେ ବାନ୍ଧିବା ଚେଷ୍ଟା ଚାଲିଚି ସେଇଠି ଧର୍ମ ।

ଗୋରୀ ଜେଜେ କହିଲେ, ପିଲାଏ ତମେ ତ ଧର୍ମ ବିଚାରରେ ସାତଖଣ୍ଡ ରାମାୟଣ ପଢ଼ିଲଣି । ଏବେ ମୋ ପିଲାଦିନର ଗୋଟିଏ କାହାଣୀ ଶୁଣ । ଗୋଟିଏ ବ୍ରାହ୍ମଣ ଶାସନ

ଥିଲା । ସମସ୍ତେ ନିଷ୍ଠାବନ୍ତ । ଘରେ ଘରେ ହୋମ କୁଣ୍ଡ । ପୂଜାପାଠ ଛଡ଼ା ଆଉ କାହିଁରେ କାହାର ମନ ନାହିଁ । ଦିନେ ପଣ୍ଡାଙ୍କ ସାନବୋହୂ ଡ଼ରରେ ରାତି ଅନ୍ଧାରରେ ବାହାରକୁ ନଯାଇ ହୋମ କୁଣ୍ଡରେ ପରିସ୍ରା କରିଦେଲା । ସକାଳୁ ପାଉଁଶ ସଫା କଲାବେଳକୁ ମୁଣ୍ଡାଏ ସୁନା । ପଣ୍ଡାଏ କହିଲେ ନିଶ୍ଚୟ କେହି ଅନୀତି କରିଚି । ନୋହିଲେ ହୋମ କୁଣ୍ଡରେ ସୁନା ! ପଚରା ଉଚରାରେ ସାନବୋହୂ ଦୋଷ ମାନିଲା । ପଣ୍ଡାଏ ରାଗିବାକୁ ଯାଉଥିଲେ । ହଠାତ ଲୋଭ ବଳବତ୍ତର ହେଲା । କହିଲେ ବୋହୂ ଆଜି ରାତିରେ ପରିସ୍ରା କର । ତା ଆର ଦିନକୁ ଆଉ ମୁଣ୍ଡାଏ ସୁନା । ଏକଥାକି ଲୁଚି ରହେ । ପଣ୍ଡିଆଣୀ ତାଙ୍କ ମିତଣିଙ୍କୁ ରାଣ ନିୟମ ପକେଇ ଆଉ କାହାକୁ ନକହିବାକୁ କହି କଥାଟା କହିଦେଲେ । ସିଏ ତାଙ୍କ ସ୍ୱାମୀଙ୍କୁ କହିଲେ । ଷଡ଼କାନ ମନ୍ତ୍ରଭେଦ । କଥାଟା ଫୁଟିଆରା ହେଲା ସାଙ୍ଗେ ସାଙ୍ଗେ ସମସ୍ତଙ୍କ ଘରେ ହୋମ କୁଣ୍ଡରେ ମୁତା ଚାଲିଲା । ସୁନାମୁଣ୍ଡା ସଂଗ୍ରହ ଚାଲିଲା ।

ସେଇ ଗାଁରେ ସବୁଠୁ ଗରୀବ ବ୍ରାହ୍ମଣ ଘରେ ଦି ପ୍ରାଣୀ । ଏମିତି କପାଳ ଯେ ଦି ଗାଁ ଗଲେ ମାଣେ, ପାଞ୍ଚ ଗାଁ ଗଲେ ବି ମାଣେ । ବ୍ରାହ୍ମଣୀ ନେହୁରା ହେଇ ବ୍ରାହ୍ମଣକୁ କହିଲା ଗାଁ ଯାକ ବଡ଼ଲୋକ ହେଲେ । ମତେ ତମେ ମୁତିବାକୁ ଅନୁମତି ଦିଅ । ଆମ ଦୁଃଖ ଘୁଞ୍ଚିଯିବ । ବ୍ରାହ୍ମଣ କହିଲା, ଆମରି ପୁଣ୍ୟରୁ ଗାଁଟା ରହିଚି । ମୁଁ ତତେ କେମିତି ଅନୁମତି ଦେବି ? ବୁଢ଼ି କହିଲା ତୋର ଏଡ଼ିକି ଅହଙ୍କାର ? ତୋରି ଯୋଗୁଁ ଗାଁ ରହିଚି ? ବୁଢ଼ିର କଡ଼ା କଡ଼ା କଥା ବୁଢ଼ା ସମ୍ଭାଳି ପାରିଲା ନାହିଁ । କହିଲା, ଆଚ୍ଛା ଚାଲ ଗାଁ ଛାଡ଼ି ଚାଲିଯିବା । ଦେଖା ଯାଉ ହେଉଚି ।

ବୁଢ଼ା ବୁଢ଼ି ଗାଁ ଛାଡ଼ି ଗଲେ । ସେ ଦିନ ସଞ୍ଜବେଳକୁ ମିଶ୍ରଘର ପଡ଼ିଶାଘର ହୋମକୁଣ୍ଡ ମାଡ଼ି ବସିଲେ । ଦିନକୁ ଦି ମୁଣ୍ଡା ସୁନା ମିଳିବ । ତାଙ୍କ ଦେଖାଦେଖି ଯିଏ ବଳୁଆ ସିଏ ନିର୍ବଳୁଆଙ୍କ ଘରକୁ ଦଖଲ କରିଗଲା । ଯିଏ ନପାରିବା ଲୋକ ଆପଣା ସମ୍ପତ୍ତି ରକ୍ଷା ନକରିପାରି ଗାଁରେ ନିଆଁ ଲଗେଇ ଦେଲେ । ତିନି ଦିନରେ ଗାଁ ପୋଡ଼ି ଜଳି ନଷ୍ଟ ।

ଖବର ପାଇ ବ୍ରାହ୍ମଣ ବ୍ରାହ୍ମଣୀକି କହିଲା, ଏବେ ଦେଖିଲୁ ଏଇଟା ମୋର ଅହଙ୍କାର ନୁହେଁ । ଯୋଉ ନୀତି ନିୟମ ସମାଜକୁ ବାନ୍ଧି ରଖିଥିଲା ସେଇ ନୀତି ହୁଡ଼ିଲାରୁ ଅଧର୍ମ ଆଉ ଅଧର୍ମରୁ କୁଳନାଶ । ସାମାଜିକ ନ୍ୟାୟ ଏଇ ଧର୍ମର ମୂଳକଥା । ସବୁ ଧର୍ମ, ସବୁ ମତ ଯଦି ପରସ୍ପରକୁ ସମ୍ମାନ କରନ୍ତେ, ତେବେ ଭାଇ ଭାଇଙ୍କ ଭିତରେ ଯୁଦ୍ଧ ହୁଅନ୍ତା ନାହିଁ । ଧର୍ମ ନାଁରେ କେହି କାହାରି ଅନିଷ୍ଟ କରନ୍ତେ ନାହିଁ ।

ସଭା ଭାଙ୍ଗିଗଲା । ସଭିଏଁ ଯେଝା ଘରକୁ ଗଲେ ।



# ଘର

ମଣିଷ ଜୀବନରେ ନ୍ୟୂନତମ ଦରକାରର ତାଲିକା କଲେ ତହିଁରେ ଘର ପ୍ରଧାନ ସ୍ଥାନ ପାଇବ । କୁଡ଼ିଆଠୁ ନଅର ଯାଏ ଘରର ଯେ କେତେ ପ୍ରକାର ଭେଦ ଅଛି ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ଖାଲି କୁଡ଼ିଆ କେତେ ପ୍ରକାରର ସେ ବିଷୟରେ ବି ଗବେଷଣା କରାଯାଇ ପାରିବ । ରାମଚନ୍ଦ୍ର ବଣରେ ପତ୍ର କୁଡ଼ିଆରେ ରହୁଥିଲେ । ରାମ ଭଣ୍ଡାରୀ ବମ୍ବେରେ ଅଖା ଖଣ୍ଡ ଆଉ ପୋପଡ଼ା ହୋଇଥିବା ଟାରଜାତି ଜିନିଷର ଛାତ ଥିବା କୁଡ଼ିଆରେ ରହୁଛି । କାହା ଘର ହାୱାମହଲ ତ ଆଉ କାହାର ଜଳ ମହଲ । କାହା ଘର ଦୁର୍ଗ ତ ଆଉ କାହା ଘର ପାଞ୍ଚଖେଣିଆ ଧୂଳିଆପିଟା । ତିଆରି ସରଞ୍ଜାମ, ତିଆରି ଯାଗା, ତିଆରି ପ୍ରକାର ଭେଦରେ ଘର ନାନା କିସମର । ୟା ଖାଲି ରହିବା ଢ଼ଙ୍ଗରଙ୍ଗ ନୁହେଁ, ମଣିଷର ସାମାଜିକ ସ୍ତରର ବି ମାପକାଠି ।

ମଣିଷ ଜାତିର ଉଦ୍ଭବ କାଳରୁ ପ୍ରାକୃତିକ ବିପର୍ଯ୍ୟୟରୁ ରକ୍ଷାପାଇବା ପାଇଁ, ବଣଜନ୍ତୁ ଆଉ ଆପଣା ପ୍ରତିଦ୍ୱନ୍ଦୀଙ୍କଠୁ ବଞ୍ଚିବା ପାଇଁ ଆଶ୍ରୟର ପ୍ରୟୋଜନରୁ ଖାଲି ନୁହେଁ, ଆପଣା ଜୈବକ୍ରିୟା ସହିତ ସମ୍ବନ୍ଧିତ ଲାଜରୁ ବଞ୍ଚିବା ପାଇଁ ଗୁମ୍ଫା ହେଉ କି ଗଛଘର ହେଉ, ମାଟି ତଳର ଖଣି ଗାତ ହେଉ କି ବରଫର ଇଗଲୁ ହେଉ ଜୀବନ କ୍ରିୟା ସାଙ୍ଗରେ ୟାର ଏପରି ଘନିଷ୍ଠ ସମ୍ବନ୍ଧ ଯେ ଘର ସାଙ୍ଗରେ ମାନ, ଇଜ୍ଜତ, ଆଦର୍ଶ ସବୁ ଯୋଡ଼ାହେଇ ରହିଚି । ମଣିଷ ଆପଣା ଘର ପାଇଁ ଜୀବନ ଦବାକୁ ବି ତିଆର ହେଇଯିବାର ଉଦାହରଣ ଆଖି ଆଗରେ, ବତେଇବା ଦରକାର ନାହିଁ ।

କଲିକତା, ବମ୍ବେ ପରି ସହରରେ ଲକ୍ଷ ଲକ୍ଷ ଲୋକ ରାସ୍ତାକଡ଼ରେ ଶୁଅନ୍ତି । ସେଇ ତାଙ୍କର ଘର । ସେଠି ଖୁଣ୍ଟ ନାହିଁ କି ଛାତ ନାହିଁ । ବାଡ଼ ନାହିଁ କି ରଖୁଆଳ ନାହିଁ । ଅଲେଖା ବୁଝାମଣାରେ ପ୍ରତ୍ୟେକଙ୍କ ଯାଗା ସୁରକ୍ଷିତ । ଜୀବନର ସବୁ ନାଟ ଖୋଲାରେ । ଜନ୍ମ ମରଣର ସୀମା ଭିତରେ ଦିହମନର ସବୁ ଦାବୀର ମେଣ୍ଟଣ ରାସ୍ତାକଡ଼ର ସେଇ କେତେ ଗଜ ଯାଗାରେ । ଏଠି ତିଆରି ବସ୍ତିର ଚଉହଦୀ ଘେନି ବିଚାର ନୁହେଁ । ମଣିଷ ସହିତ ସ୍ଥାନର ସମ୍ବନ୍ଧ ବିଚାରରେ ଘରର ବିଚାର ।

ଇଂରାଜୀରେ ଗୋଟିଏ କଥା ଅଛି, ପ୍ରତି ମଣିଷର ଘର ଗୋଟିଏ ଦୁର୍ଗ । ମଣିଷ ପରିବାରର ସୁଖଦୁଃଖ, ଭଲମନ୍ଦ, ହାନିଲାଭ, ରାଗରୋଷ ସବୁ ମିଶି ଏମିତି ଏକ ବ୍ୟକ୍ତିଗତ ଜଗତ ସୃଷ୍ଟି କରନ୍ତି ଯେ, ତା ସେଇ ମଣିଷ ପରିବାରର ଏକାନ୍ତ । ଖୋଲା ଆକାଶ ତଳେ ହେଉ କି ଚୋଳା ନଅର ଭିତରେ ହେଉ, ଜଣକର ହେଉ କି ଯୁକ୍ତ ପରିବାରର ହେଉ ଏଇ ଅଛୁଆଁ, ଅଦେଖା ସମ୍ପର୍କ ହେଉଚି ଘର । ଏଥିରେ ପ୍ରତିପତ୍ତି ସାଙ୍ଗକୁ ପରମ୍ପରା ମିଶାମିଶି ହେଇ ରହିଚି ।

ଘରକୁ ଆସିବା, ଘରୁ ବାହାରିଯିବା, ଘରକୁ ଫେରିବା, ବେଘର ହେବା ଆଦି କଥାରେ ଏତେ ଇମୋସନ ଖୁନ୍ଦି ହେଇଚି ଯେ ପ୍ରତ୍ୟେକ ବିଷୟରେ ପୋଥିଲେଖା ହେଇ ପାରିବ । ସୀତାଙ୍କୁ ଘରୁ ବାହାର କରିଦେବାରୁ ତାଙ୍କୁ ଘରକୁ ଆଣିବାର ଅଗ୍ନିପରୀକ୍ଷା ତ ରାମାୟଣ । ଅବୁଝା ପୁଅ (ପ୍ରଡ଼ିଗାଲ୍ ସନ୍)ର ଘରକୁ ଫେରିବା ଗପ ତ ଅମର ହେଇଯାଇଚି । ଘରର ପରମ୍ପରା, ଆଦର୍ଶ, ରଖିବା ନରଖିବାରୁ ଘରୁଆ ଘର ପିଲା କି ନାଇଁ ଜଣାପଡ଼େ । ଘର ତ ସମସ୍ତଙ୍କର ଅଛି । କିନ୍ତୁ ସମସ୍ତେ ଘରୁଆ ନୁହନ୍ତି । ସେଥିପାଇଁ ବିଭିନ୍ନ ସମାଜର ଭିନ୍ନ ଭିନ୍ନ ମାପକାଠି ଅଛି ।

ଆଉ ଗୋଟିଏ ଦିଗରୁ ଦେଖିଲେ ମଣିଷର ଭାଷା ତାର ଘର । ଲୁଗା ଯେମିତି ଦେହର ଆବରଣ, ଭାଷା ସେମିତି ମନର ଆବରଣ । ଘରର ନିର୍ମାଣ ପ୍ରକ୍ରିୟା ଯେମିତି ବାହାରର ଐଶ୍ୱର୍ଯ୍ୟ ଦେଖାଏ, ଭାଷାର କମକୁଟ ସେମିତି ଭିତରର ଐଶ୍ୱର୍ଯ୍ୟ ଦେଖାଏ । ଘର କହିଲେ ଆମେ ସାଧାରଣ ଭାବେ ଯାହା ବୁଝୁ ତା'ବାହାର ସଂସାରର ପରିମାପ ଆଉ ପରିପ୍ରକାଶ । ଭାଷା ଭିତର ଦୁନିଆର ପରିମାପ ଆଉ ପରିପ୍ରକାଶ । ସମ୍ଭବତଃ ଏଇଥିପାଇଁ ମଣିଷ ସାଙ୍ଗରେ ଭାଷାର ଅନ୍ତରଙ୍ଗତା ଏତେ ଘନିଷ୍ଠ ।

ବେଳେବେଳେ ଜୀବନରେ ଏପରି ଅବସ୍ଥା ଆସେ ମଣିଷକୁ ଘର ଛାଡ଼ିବାକୁ ପଡ଼େ । ସେଇମିତି ଅବସ୍ଥା ବିଶେଷରେ ମଣିଷକୁ ଭାଷା ମଧ ଛାଡିବାକୁ ପଡ଼େ । କିଏ ଗାଁରୁ ସହରକୁ ଗଲା, କିଏ ଦେଶାନ୍ତରୀ ହେଇ ବିଦେଶ ଗଲା, ତାର ବାହାର ଘର ବଦଳି ସାଙ୍ଗକୁ ଭିତର ସମ୍ବନ୍ଧର ଯେଉଁ ଓଲଟ ପାଲଟ ହୁଏ, ଭାଷାର ହେରଫେରରେ ହିଁ ତାକୁ ମାପିବା ସମ୍ଭବ । କୋଉ ରୁଷି ବା ହିନ୍ଦୀ ଇଂରାଜୀକୁ ଆପଣାର କଲା, କୋଉ କିସାନ କି ସାନ୍ତାଳ ଓଡ଼ିଆର ଶରଣ ନେଲା, ଏଥିରେ ବେଘର ହେବାର ଯେଉଁ କରୁଣ ଇତିହାସ ଲେଖା ହେଇଚି, ତା ମଣିଷ ଇତିହାସରେ ଅନନ୍ୟ ।

ନିଜ ରହିବା ଘର, ବଗିଚା ଘର, ଚାଷଘର କି ବସାଘର ପରି କେହି କେହି ଦୁଇ ତିନି ଭାଷାରେ ଆପଣାକୁ ପ୍ରକାଶ କରିଥାନ୍ତି । ଅନ୍ନଦାଶଙ୍କର ଓଡ଼ିଆ ଆଉ ବଙ୍ଗଳାରେ ଲେଖିବା ଆରମ୍ଭ କଲେ । ବଙ୍ଗଳା ହେଲା ତାଙ୍କର ରହିବାଘର, ଓଡ଼ିଆ ବସାଘର । ରହିବାଘର ଆଉ ଅନ୍ୟାନ୍ୟ ଘର ପରସ୍ପରର ପରିପୂରକ, ବିରୋଧୀ ନୁହନ୍ତି । କେତେକ କାମ ଏଠି ହୁଏ, ସେଠି ହୁଏନାହିଁ, ଆଉ କେତେକ ସେଠି ହୁଏ, ଏଠି ହୁଏନାହିଁ । ବଙ୍ଗଳା ଲେଖିକା ନବନୀତା ଦେବସେନ ଇଂରାଜୀ ଓ ବଙ୍ଗଳା ଉଭୟରେ ଦକ୍ଷ, ସବ୍ୟସାଚୀ । କିନ୍ତୁ ତାଙ୍କ କହିବା ମତେ ସେ ଇଂରାଜୀରେ ଅନେକ କଥା ଲେଖନ୍ତି ଯାହା ବଙ୍ଗଳାରେ ଲେଖିପାରିବେ ନାହିଁ ଆଉ ବଙ୍ଗଳାରେ ଅନେକ କଥା ଲେଖନ୍ତି, ଯାହା ଇଂରାଜୀରେ କହିବା ଅସମ୍ଭବ ନୋହିଲେ ବି ଅସୁବିଧା ।

ଘରକୁ ସୁନ୍ଦର ସିନା ଘରଣୀ ଥିଲେ । ଘରୁ ଘରଣୀଙ୍କ ଯାଏ ଯାତ୍ରା ଯେତିକି ଲମ୍ବ ସେତିକି ପାଖ । କୋଉ ଋଷିଙ୍କ କୌପୁନୀକୁ ମୂଷା କାଟିଦେଲା ବୋଲି ମୂଷା ମାରିବାକୁ ବିଲେଇ ରଖିବାରୁ ଆରମ୍ଭ କରି ବିଲେଇକୁ ଦୁଧ ଖୁଆଇବାକୁ ଗାଈ, ଗାଈ ଦେଖାଶୁଣା କରିବାକୁ ଜଗୁଆଳୀ ପିଲା ଆଉ ତା ଦେଖାରଖା ପାଇଁ ଘରଣୀ ଯୋଗାଡ଼ କରିବା ଲମ୍ବା କାହାଣୀ । ପୁଣି ପ୍ରଥମ ଦେଖାରେ ପ୍ରେମରୁ ଘରଣୀ ଯୋଗାଡ଼ରେ କାହାଣୀର ଆରମ୍ଭ ଆଉ ଶେଷ ଏକାଠି ଯୋଡ଼ା ।

ଘରକୁ ଘରଣୀ ଥିଲେ ସୁଖ ସିଏ ଯଥେଷ୍ଟ ନୁହେଁ । ଘରଣୀ ଯଦି ଶୁଆ ପକ୍ଷୀ ନପୋଷିଲେ, ସେ ଶୁଆ ଯଦି ରାମ ନାମ ନରଟିଲେ ତେବେ ସେ ଘର ପୂର୍ଣ୍ଣ ହେଲାନାହିଁ । ଯେମିତି କଥାରେ ଅଛି ପୋତା ଶାଳ, ଉଚ୍ଚା ତାଳ, ରୁଥ ହେନ୍ତାଳ, ଗଣ୍ଡି ବେତାଳ, ଘରଣୀ ଚେତାଳ, ତେବେ ସେ ଘର ଯାଏ ଅପାର କାଳ ।

ସମାଜ ଯେମିତି ସ୍ଥିତିଶୀଳ ହେଲା ଅପାର କାଳ ପାଇଁ ଘର ତିଆରିର କଳ୍ପନା ସେମିତି ହେଲା । ମନବୋଧ ଚଉତିଶାରେ ''ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ । ଘଟ ଛୁଟିଲେ ତତେ ବୋଲିବେ ଭୂତ । ଘର ଘରଣୀ ଦେହ କିଳଉ ଥିବେ । ଘେନି ବନ୍ଧୁକୁଟୁମ୍ବ ଶୁଦ୍ଧ ହୋଇବେ ।'', ବୋଲି ଯାହା କୁହାଯାଇଚି ତାହା ଘର ପ୍ରତି ମନନଲାଗିଯିବା ପାଇଁ ଚେତାବନୀ । ଅକ୍ଷୟ ମହାନ୍ତିଙ୍କର ଏବର ଗୀତ 'ଏମିତି ଏକ ବଗିଗାରେ ମୁଁ ବାନ୍ଧିଚି ମୋର ଘର । ଯହିଁ ଫୁଲ ତ ନୁହେଁ ମାଳିତ ନୁହେଁ କେହିବି ନୁହେଁ ମୋର' ଏଇ ମାନସିକତାର ପ୍ରକାଶ । ଘର, ଘରଣୀ ସବୁକୁ ମୋର କହିବା ମଣିଷର ସହଜାତ ପ୍ରବୃତ୍ତି । ''ମୁଁ କାର ମାତର ମୋର ଅଛି ବୋଲି କହିବାକୁ ନାହିଁ ବାଟ, ଦୂରୁ ଶ୍ରୀଚରଣେ ଅର୍ପଣ କରୁଚି ଘେନ ତା ବିଶ୍ୱ ସମ୍ରାଟ ।'' କହିବାକୁ କେତେଜଣଙ୍କର ସାହସ ଅଛି ।

ସଂସ୍କୃତରେ କୁହାଯାଇଚି 'ଗୃହିଣୀ ଗୃହମୁଚ୍ୟତେ' । ଘରଣୀ ହିଁ ଘର । ଘର ଆଉ ଘରଣୀ ବିଷୟ । ଗୀତାରେ କୁହାଯାଇଚି ବିଷୟରେ ଥରେ ମନ ବସିଗଲେ କାମ, କ୍ରୋଧ, ସମ୍ମୋହ, ସ୍ମୃତି ଭ୍ରଂଶ ହରିଆରେ ବିନାଶ ସୁନିଶ୍ଚିତ । ଛିତି ଓ ବିନାଶ ଅଙ୍ଗାଙ୍ଗୀଭାବେ ଜଡ଼ିତ । ପୁରୁଣା ଭାଙ୍ଗି ନୂଆ ଗଢ଼ିବା ହେଉଚି ସଂସାରର ରୀତି, ଘର ହେଉ, ଭାଷା ହେଉ, ସମାଜ ହେଉ କି ସଂସ୍କୃତି ହେଉ ।



# ଜୀବନ

ଜୀବନର ଅର୍ଥ କଅଣ ପଚାରି ମୁଁ ସବୁଠୁ ନିରାଶ ହୋଇଚି । ଯାହା ଜିଅନ୍ତା ତାର ଜୀବନ ଅଛି । ଯାହାର ଜୀବନ ଅଛି ତା ଜିଅନ୍ତା । ଏଥିରୁ ଜୀବନ ବା ଜିଅନ୍ତା ବିଷୟରେ ଆପଣଙ୍କର ଜ୍ଞାନ ବଢ଼ିଲା କି ? ତର୍କରେ ଯାକୁ ଗୋଲାକାର ଯୁକ୍ତି କୁହାଯାଏ । ଜୀବନ କଣ ତା ସମସ୍ତଙ୍କର ଅନୁଭବରେ ଅଛି । ଯାହାର ଜମା ଅନୁଭବ ନାହିଁ ତାକୁ ଜିଅନ୍ତା କହିବା ଦ୍ୱିଧା ହେବା ସ୍ୱାଭାବିକ । ଇଏ ବି ଆଗପରି ଯୁକ୍ତି ।

ମହନୀ ମିଶ୍ରେ କହିଲେ, ଷଡ଼ଚକ୍ର ଆଉ ଶରୀର ଭେଦ ନଜାଣିଲେ ଜୀବନ କ'ଣ ବୁଝିବା ବୁଝେଇବା କଠିଣ । ଯୋଉ ପବନ ନାକ ବାଟେ ଯିବା ଆସିବା କରୁଚି ସିଏ ଅହଂ ସଃ ଆଉ ସୋହଂ କହୁଚି । ଇଏ ଗଭୀର ତତ୍ତ୍ୱ କଥା । ଏଇଥି ପାଇଁ ଜୀବନକୁ ହଂସ ଆଉ ମରଣକୁ ହଂସା ଉଡ଼ିଗଲା ବୋଲି କହନ୍ତି ।

ମଧୁଆ ପଚାରିଲା, ରେଳ ଯେମିତି ଛ ଛ ପଇସା କହେ, ଏଇ ହଂସ ସୋହଂ ସେଇମିତି କଥା ପରି ଶୁଭୁଚି । ହେଲେ ରେଳରେ ବସି ଯୋଉ କଥା କହିବ ରେଳ ସେଇଥିରେ ତାଳ ଦେଲା ପରି ଲାଗିବ । ଆଉ ଏଇ ନିଶ୍ୱାସ କଣ ଖାଲି ଗୋଟିଏ କଥା ରଟୁଚି ?

ମହନୀ ମିଶ୍ରେ ଆପଣା ଗମ୍ଭୀରତା ରଖି କହିଲେ, ହଁରେ ମଧୁଆ ଇଏ ହେଲା ଜୀବ ପରମ ସମ୍ବାଦ । ଜୀବ ପ୍ରତି ମୁହୂର୍ତ୍ତରେ ମନେ ପକେଇ ଦଉଚି ଯେ ମୁଁ ହଉଚି ସିଏ ଆଉ ସିଏ ହେଉଚି ମୁଁ । ସିଏ ହେଲା ପରମାତ୍ମା । ଏଇ ଜୀବାତ୍ମା ପରମାତ୍ମାର ଅଂଶ । ମାୟାରେ ଘାରି ହେଇ ସେ ଆପଣାକୁ ଚିହ୍ନି ପାରୁନି । ହେଲେ ପରମାତ୍ମା ସାଙ୍ଗରେ ନାଡ଼ିର ଯୋଗ ଅଛି ତ । ସେଇଥିପାଇଁ ଭୁଲ ମନକୁ ବାଟକୁ ଆଣିବାକୁ ଏଇ ବ୍ୟବସ୍ଥା । ଯୋଉଦିନ ମଣିଷର ଚେତା ଚଇତନ ଜୀବ ଆଉ ପରମର ଏକାତ୍ମ ଭାବ ଜାଣିବ ସେଇଦିନ ଜାଣି ତାର ମୋକ୍ଷ ।

ଲକ୍ଷ୍ମୀଧର କହିଲେ ମହନୀ ମିଶ୍ରେ ପବନକୁ ଧରି ଜୀବନକୁ ବୁଝିବା ଚେଷ୍ଟାକଲେ । ଆହେ, ଦିହ ଯୋଉ ପଞ୍ଚଭୂତରେ ଗଢ଼ା ସେଥିରୁ ଗୋଟିଏ ହେଲା ବାୟୁ । ପ୍ରାଣ ବାୟୁ କଥା ପୁରା ବୁଝିବାକୁ ହେଲେ ଏଇ ପଞ୍ଚଭୂତ କଥା ବୁଝିବାକୁ ହେବ । ଅଭିଧାନ ଖୋଲି ଦେଖ । ଜୀବନ ଶବ୍ଦର ଅର୍ଥ ହେଉଚି ଜଳ । ପୁରାଣରେ ପ୍ରଳୟ ଜଳରେ ଶେଷଶାୟୀ ବିଷ୍ଣୁ ଆପଣା ନାଭି କମଳରେ ଯେଉଁ ବ୍ରହ୍ମାଙ୍କୁ ଧାରଣକଲେ ସେଇ ହେଲେ ସ୍ରଷ୍ଟା । ଏ ଜଳରୁ ବିଷ୍ଣୁ ମତ୍ସ୍ୟ ଅବତାର ହୋଇ ବେଦ ଉଦ୍ଧାର କରି ସୃଷ୍ଟିକି ବଞ୍ଚେଇ ଥିଲେ ।

ମଧୁଆ କହିଲା, କଥାରେ ଅଛି ଜଳ ବହୁଳେ ସୃଷ୍ଟି ନାଶ । ଜଳ ବିହୁନେ ସୃଷ୍ଟି ନାଶ । ବଢ଼ି ମରୁଡ଼ି ଉଭୟରେ ହଂସ ହାନି । ଉପେନ୍ଦ୍ରଭଞ୍ଜ ମଣିଷର ଛଟପଟକୁ 'ଜୀବନ ବିହୁନେ ଯେହ୍ନେ ଝଷ'ବୋଲି କହିଛନ୍ତି । ପ୍ରକୃତରେ ପାଣିରୁ ବାହାରକରି ମାଛକୁ କୂଳରେ ପକେଇ ଦେଲେ ତାର କି ଯନ୍ତଣା ନ ହଉଥିବ । ମାଛ ଜଳଚର । ଆମେ ସମସ୍ତେ କଣ

ଜଳଚର ?

ଲକ୍ଷ୍ମୀଧର କହିଲେ, ମାଛ ଯୋଉ ଅର୍ଥରେ ଜଳଚର ମଣିଷ ସେଇଅର୍ଥରେ ନୁହେଁ । ତେବେ ଆମ ଦେଶର ପଣ୍ଡିତମାନେ ପୁରାଣରେ ଯୋଉ ଦଶ ଅବତାରର କଳ୍ପନା କହିଛନ୍ତି ତା ଜୀବନ ବିକାଶର ଗତି ଧାରା ବୋଲି କେହି କେହି କହନ୍ତି । ଜଳରୁ ଥଳକୁ ଆସି, ରୂପ ବଦଳେଇ ପରିବେଶ ସାଙ୍ଗରେ ଖାପ ଖାଇ ମଣିଷ କେମିତି ତିଆର ହେଲା ଭାବିଲେ ଅବାକ ଲାଗେ । ମାଙ୍କଡ଼ ଆମର ପୂର୍ବପୁରୁଷ ଥିଲେ ଏକଥା ଭାବିଲେ ଆଜି ହସ ମାଡ଼େ ଆଉ ଲାଜ ଲାଗେ । ଅଥଚ ମଣିଷ ମଣିଷ ହବା ଆଗରୁ ମାଙ୍କଡ଼ ସହିତ ତା ନିକଟ ଆତ୍ମୀୟତା ଥିଲା । ମା ପେଟରେ ବେଙ୍ଗ ପୁଟା ଆକାରରୁ ଆରମ୍ଭ କରି ମଣିଷ ରୂପ ହେଲା ପର୍ଯ୍ୟନ୍ତ ବିବର୍ତ୍ତନରେ ସୃଷ୍ଟିର ଏଇ ଧାରଣା ଦେଖିବାକୁ ମିଳେ ।

ମଧୁଆ କହିଲା, ସାଆନ୍ତ ତମେ ଜୀବନକୁ ଆଣି ମାଙ୍କଡ଼ ଠେଇ ଥୋଇଲ । ବାୟୁରୁ ଆଣି ଜଳରେ ପହଞ୍ଚେଇଲ । ଆମେ ଯୋଉ ତିମିରେ ସେଇ ତିମିରେ ।

ମହନୀ ମିଶ୍ରେ କହିଲେ, ଆରେ ମଧୁଆ ତୋରି ଅବୁଝାପଣରୁ ଆମେ ସମସ୍ତେ ଲାଭ ଉଠେଉଛୁ । ଏତେ ବିଗର ଆଲୋଚନା ହଉଚି । ଦେଖ । ମାଟିର ତିଆର ଘଟ । ଜଳ ଆଉ ବାୟୁର ସମ୍ବନ୍ଧ ତ ଦେଖିଲୁ । ଜୀବନ ହେଉଚି ତେଜ । ଏଇ ତେଜ ହେଲା ପରମର ଅଙ୍ଗ । ମଣିଷ ଭିତର ବାହାର ଶୂନ୍ୟ । ପରମ ତ ମହାଶୂନ୍ୟବାସୀ । ଏଇ ଶୂନ୍ୟରୁ ଶବ୍ଦ ସୃଷ୍ଟି । ମଣିଷ ଦିହରେ ଆତଯାତ ହେଉଥିବା ବାୟୁ ହିଁ ଶବ୍ଦର ମୂଳ । ଜୀବନ ଥିଲାଯାଏ ତେଜ ଅଛି, ଭାଷା ଅଛି । ପ୍ରାଣବାୟୁ ଉଡ଼ିଗଲେ ଶିବ ହଉଚି ଶବ । ଏଇ ଶବର ଜ୍ୟୋତି ନାହିଁ କି ଶବ୍ଦ ନାହିଁ । ଜୀବନ ହଉଚି ପଞ୍ଚଭୂତକୁ ଏକାଠି ବାନ୍ଧି ରଖିବାର ମୂଳ ସୂତ୍ର । ଜୀବନ ଗଲେ ପଞ୍ଚଭୂତ ପଞ୍ଚଭୂତରେ ମିଶିଯିବେ ।

ମଧୁଆ କହିଲା, ସାଆନ୍ତେ, ଜୀବନ କୁଆଡୁ ଆସିଲା, କୁଆଡ଼େ ଗଲା କହିଲ । ହେଲେ ଜୀବନ କ'ଣ ସେ କଥା ତ କହିଲ ନାହିଁ ।

ବୟୀ ମିଶ୍ରେ କହିଲେ, ସଂସାର ହେଉଚି ମାୟା ବଜାର । ଆମ ଗାଁ ନାଟରେ ସଦାନନ୍ଦ କମ୍ପାଉଣ୍ଡର 'କେତେରଙ୍ଗେ ସଜେଇଚୁ ମା ଏ ବଜାର । ଜାଣିତ ପାରିଲି ନାହିଁ ମା ଏ ବାହାଦୁରୀ କାହାର । ଜାଣିତ ପାରିଲି ନାହିଁ ମା ଏ ବାହାଦୁରୀ କାହାର । କେ ବିକୁଚି କୋରା, କେ କିଣେ ଉଖୁଡ଼ା କାର ଚୁଡ଼ା ଗଉଳରେ ବେଭାର' ଗୀତ ଗାଇ ଯେତେବେଳେ କାନ୍ଦି ପକାଉଥିଲେ ସେତେବେଳେ ସିଏ କେତେବଡ଼ ସତ ଅନୁଭବ କରି ଗୀତ ଗାଉ ଥିଲେ ଆମେ ବୁଝି ପାରୁନଥିଲୁ । ଏବେ ଭାବିଲା ବେଳକୁ ସଦାନନ୍ଦ ବାବୁ ନାହାନ୍ତି । ବାହାସାହା ହେଇ ଘର କରିବାକୁ ଆମେ ଜୀବନସଉଦା କରିବା କହୁ, ସଂସାରରେ ଲୋକଙ୍କୁ କାରବାର ହେବା କହୁ । କବିସୂର୍ଯ୍ୟ ଲେଖିଲେ 'ବିକେ କିଣେ ଯେ ଯାହାକୁ ସ୍ନେହେ' । ଇଏ ସବୁ ବଜାରର ଅଙ୍ଗୀ ଶବ୍ଦ । ଜୀବନ ଯେ କ୍ଷଣସ୍ଥାୟୀ, ସଂସାର ଯେ ଖାଲି ସଉଦା କରିବା ଯାଗା,

ଏକଥା ଭୁଲି ଯିବାରୁ ଜୀବନ ନାଟକର ନାନା ରଙ୍ଗ । ପାଞ୍ଚମନ ଆଉ ପଚିଶ ପ୍ରକୃତି ତାକୁ ନାନା ଆଡ଼କୁ ଟାଣୁଛନ୍ତି । ସେଥିପାଇଁ ଆପଣାର ମୂଳ ସ୍ୱରୂପ ଜାଣିବା ତା ପକ୍ଷରେ କଷ୍ଟ ।

କିସ ପୁଣି ଦେଖା ନଯାଇ ବଞ୍ଚିଥିଲେ ଜୀବରେ । ଏଇ ଜୀବନ ହେଉଚି ସାକ୍ଷୀ । ସଂସାରରେ ନାନା ଘଟଣା ଥିବା ଓ ହେବା ମଝିରେ ଯୋଗସୂତ୍ର । ଏ ସବୁର ନାୟକ ପୁଣି ସାକ୍ଷୀ ହେଉଚି ଜୀବନ । ସିନେମା ପରଦାର ଛବି ପରି ସଂସାରଯାତ୍ରା ଚାଲିଛି । ଆମେ ତାକୁ ଦେଖୁଚେ । ସେଥିର ସୁଖ ଦୁଃଖରେ ଭାଗୀ ହେଉଚେ । ପୁଣି ତା ବାହାରେ ରହି ତାର ସମାଲୋଚନା ବି କରୁଚେ । ଜୀବନ ତ ସେଇଆ ।

ଶଙ୍କରାଚାର୍ଯ୍ୟ କହିଥିଲେ ଜୀବନ ହେଉଚି ପଦ୍ମପତ୍ର ପାଣି ପରି ଢ଼ଳଢ଼ଳ, ଅତିଶୟ ଚପଳ । ରବୀନ୍ଦ୍ରନାଥ ପ୍ରାର୍ଥନା କଲେ, ହେ ପ୍ରଭୁ, ଜୀବନ ଯେତେବେଳେ ଶୁଖିଯାଏ ତମେ କରୁଣାଧାରାରେ ଆସ । ମଣିଷ ଯେତେବେଳେ କ୍ଷମତା ଅନ୍ଧ, ଧନ ପାଗଳ, ସ୍ନେହ ପ୍ରେମ କରୁଣା ଯେତେବେଳେ ମଣିଷ ସମ୍ପର୍କକୁ ନିୟନ୍ତ୍ରଣ କରେ ନାହିଁ, ମନର ପାପ ଯେତେବେଳେ ସରସତାକୁ ଶୁଖେଇ ଦିଏ ସେତିକିବେଳେ ଜୀବନ ଶୁଖି ଶୁଖି ଯାଏ । ଜୀବନ ସଚେତନତାର ପ୍ରୟୋଜନ ସେତିକିବେଳେ ବେଶୀ । ଆଜି ଏଇ ନାନା ଲୋଭର ଚାପରେ ମଣିଷ ଆପଣା ଦେଶ, ଭାଷା, ସଂସ୍କୃତିରୁ ବେଘର ହେଲାବେଳେ ଜୀବନର ଅର୍ଥ ଖୋଜିବା ସ୍ୱାଭାବିକ । ଏ ଅର୍ଥ ଅଭିଧାନରେ ନୁହେଁ ଅନୁଭବରେ ହିଁ ଖୋଜିବାକୁ ହେବ ।



# ମରଣ

କୋକିଳ ବୋଉ କହିଲା, ତୋ ବାପା ବୋଉ ଚାଲିଗଲେ । ମତେ ଯାହା ମରଣ ହେଉନାହିଁ ।

କୋକିଳ ବୋଉ ମତେ ପିଲାଦିନୁ କୋଳେଇ କାଖେଇ ମଣିଷ କରିଚି । ଆଜି ସିଏ ସତୁରୀ ବର୍ଷର ବୁଢ଼ି । ମୁଁ ପଚାରିଲି କୋକିଳ ବୋଉ, ସତ କହିଲୁ । ତୁ କଣ ସତରେ ମରଣ ଚାହୁଁଚୁ ? ମନେକର ତୋ କହିବା ଅନୁସାରେ ଯମ ଆସି ତୋ ଆଗରେ ଠିଆ ହେଇଯିବ । କୋକିଳ ବୋଉର ସୁର ବଦଳିଲା । କହିଲା ମୋ ନାତିନାତୁଣୀ ଗୁଡ଼ାକ ଅଭେକା ହେଇଯିବେ । ଆଖିକୁ ନ ଦୁଶୁ କାନକୁ ନ ଶୁଭୁ ପଛକେ ଦୁଆର ମୁହଁରେ ଘର ଜଗି ବସୁଚି ବୋଲି ସିନା ପୁଅ ଦୋକାନକୁ ଆଉ ବୋହୂ ଘରକାମକୁ ଯାଉଚି । ଯେତେ ଦିନ ଅଛି ଥାଉ ।

ପିଲାଦିନେ ପଢ଼ିବା ଗୋଟିଏ ଗପ ମନେ ପଡ଼ିଲା । ଅଶୀ ବର୍ଷର ବୁଢ଼ା । ପିଲାଏ ପଚରାଉଚରା କରନ୍ତି ନାହିଁ । ପ୍ରତିଦିନ ଜଙ୍ଗଲକୁ ଯାଇ କାଠ ବିଡ଼ାଏ ଆଣି ବିକିଲେ ଖାଇବାକୁ ମିଳେ । ସେଦିନ କାଠବିଡ଼ା ବାନ୍ଧି ମୁଣ୍ଡକୁ ଉଠେଇ ନପାରି ବୁଢ଼ା କାନ୍ଦ କାନ୍ଦ ହେଇ ବସିଲା ।

ଏତେ ଲୋକଙ୍କୁ ଯମ ନଉଚି, ମତେ ନଉନି ? କହିବା ସାଙ୍ଗେ ସାଙ୍ଗେ ଯମ ଆଗରେ ଠିଆ ହୋଇଗଲା । କାହିଁକି ଡ଼ାକିଲୁ ? ବୁଢ଼ା କହିଲା ଏଇ କାଠ ବିଡ଼ାକ ମୁଣ୍ଡକୁ ଉଠେଇ ଦବାକୁ ଡ଼ାକିଲି ।

ଜୀବନକୁ ମଣିଷର ଲୋଭ ସବୁ ଲୋଭଠୁ ବଳବତ୍ତର । କବିଗୁରୁ ରବୀନ୍ଦ୍ର ନାଥ ଲେଖିଛନ୍ତି, ମୁଁ ଏଇ ସୁନ୍ଦର ଭୁବନରେ ମରିବାକୁ ଚାହେଁ ନାଇଁ । କେତେ ପୁଣ୍ୟରୁ ଏଇ ମଣିଷ ଜୀବନ । ତାକୁ କିଏ ବା ପୋପାଡ଼ି ଦବ ? କିଏ ଜାଣେ ଭବିଷ୍ୟତକୁ କ'ଣ ଅଛି ?

ଏଇ ଭବିଷ୍ୟତକୁ ଦେଖିପାରିଥିବାରୁ ଗୋବିନ୍ଦଚନ୍ଦ୍ରଙ୍କ ମା ତାଙ୍କୁ ସଂସାର ବୈରାଗ୍ୟ ଶିଖେଇଛନ୍ତି । ମରଣ ବା କାଳଯମ କଣ୍ଠା ପାଚିଲା ବାଛବିଚାର କରେନାଇଁ । ପାଚିଲାକୁ ଛାଡ଼ି କଅଁାକୁ ନବା ତା ପକ୍ଷରେ ଅତି ସାଧାରଣ । ତେଣୁ ହେ କୁଳଚନ୍ଦ୍ରମା, ଆଜିଠାରୁ ରାମନାମ ଭଜିବା ଆରମ୍ଭ କର । ତାହାହେଲେ ଯାଇ ଜନ୍ମ ମରଣ ଚକ୍ର କଟିବ ।

ଆମ ମହାଭାରତର ମହାଯାତ୍ରା ମରଣକୁ ଅଧାବାଟରେ ଭେଟିବା ପାଇଁ ଯାତ୍ରା । ମରଣ ତା ଦାବୀ ଧରି ପହଞ୍ଚିବା ଆଗରୁ ଆମେ ଯଦି ତାକୁ ଆପଣାର କରିବାକୁ ତିଆରି ହୋଇଥିବା ତେବେ ମରଣ ଡ଼ର ରହିବ ନାଇଁ । ଜନ୍ମ ହେଲେ ତ ନିଶ୍ଚୟ ମରଣ ଅଛି । ତେବେ ମରଣକୁ ଡ଼ର କାହିଁକି ?

ଇଏ ହେଲା ତର୍କର କଥା । ଲୋକଙ୍କର ଖାଲି ମରଣ ଡ଼ର ନୁହେଁ, ଜୀବନ ଦମ୍ଭ ଦେଖିଲେ କାବା ଲାଗେ । ଧର୍ମବକଙ୍କ ପ୍ରଶ୍ନର ଉତ୍ତରରେ ଯୁଧିଷ୍ଠିର କହିଥିଲେ, ପ୍ରତିଦିନ ଆମ ଆଖି ଆଗରେ ଶହ ଶହ ମରଣ ହେଉଚି । ଯେଉଁମାନେ ବଞ୍ଚିଛନ୍ତି ସେମାନେ ନିଜକୁ ଅମର ବୋଲି ମନେ କରୁଛନ୍ତି । ଯାଠାରୁ ଆଶ୍ଚର୍ଯ୍ୟ କ'ଣ ଅଛି ?

ଜୀବନ ଏତେ ଅଳ୍ପଦିନର । ତେବେ ବି ଲୋକ ଧନସଂଗ୍ରହରେ ବ୍ୟସ୍ତ । ଏଇ ବ୍ୟସ୍ତତା ଭିତରେ ଧନ ଭୋଗ କରିବାର ବେଳ ଓ ଶକ୍ତିସାମର୍ଥ୍ୟ ଯେ କେତେବେଳେ ଚାଲି ଯାଇଚି ଭାବିବାକୁ ବେଳ ନାଇଁ । ମଣିଷ ଆପଣାର କ୍ଷମତା ଜାହିର କରିଚି । କିନ୍ତୁ ଏ କ୍ଷମତାର ଯେ କିଛି ଅର୍ଥ ନାଇଁ ଏକଥା ବୁଝିବି ସିଏ ବୁଝୁନାଇଁ । ଭାରତର ଶେଷ ସମ୍ରାଟ ବାହଦୁରସାହ ଜାଫର ତାଙ୍କର ଗୋଟିଏ କବିତାରେ ଲେଖିଛନ୍ତି, ଜାଫର କି ବଦନସିବ । ଭାରତର ସମ୍ରାଟ ହେଇ ବି କୋଉ ବନ୍ଧୁର ବାଡ଼ିତଳେ ଦିଗଜ ଜମି ଓ କଫିନ ଘୋଡ଼େଇବାକୁ ଦିଗଜ କନା ବି ତାକୁ ମିଳିଲା ନାଇଁ ! ବିଶ୍ୱବିଜୟୀ ନେପୋଲିଅନ ମଲାବେଳକୁ ଶେଷ ଅନୁରୋଧ କରିଗଲେ, ମୋ ଦି ହାତ ଦିପଟକୁ ଝୁଲେଇ ଦବ । ଲୋକେ ଦେଖିବେ ମୁଁ ଖାଲିହାତରେ ଆସିଥିଲି, ଖାଲିହାତରେ ଯାଉଚି ।

ସୃଷ୍ଟିର ଆରମ୍ଭରୁ ଏଇ ଜନ୍ମ ମରଣ ରହସ୍ୟ ନେଇ କେତେ ପ୍ରଶ୍ନ ପଚରା ଯାଇଚି । ସବୁ ପ୍ରଶ୍ନ ପ୍ରଶ୍ନରେ ରହିଚି । ବାପା ଯଜ୍ଞ କରି ଦାନ ଦେଉଛନ୍ତି । ସାନପୁଅ ନଚିକେତା ପଚାରିଲେ ବାପା, ମତେ କାହାକୁ ଦବ ? ଦି ତିନିଥର ପଚାରିଲା ପରେ ବାପା ବିରକ୍ତ

ହୋଇ କହିଲେ ତତେ ଯମକୁ ଦେଲି । ନଚିକେତା ଯମଲୋକକୁ ଗଲେ । କାଳ ନ ପୂରିଥିଲେ ଯମ କେମିତି ବା ତାଙ୍କୁ ରଖନ୍ତେ ? ଶେଷକୁ ମରଣ ରହସ୍ୟ ବିଷୟରେ ନାନା କଥା ଜାଣି ସେ ଫେରିଲେ । ଋଷି ନଚିକେତା ହେଲେ । ମରଣ ରହସ୍ୟ ରହସ୍ୟରେ ହିଁ ରହିଗଲା ।

ସାବିତ୍ରୀ ଆପଣାର ତପସ୍ୟା ବଳରେ ଯମକୁ ସନ୍ତୁଷ୍ଟ କରି ଆପଣା ସ୍ୱାମୀଙ୍କୁ ଫେରି ପାଇଥିଲେ । କୋଉ ଋଷିକୁମାର ଶିବଲିଙ୍ଗକୁ କୁଣ୍ଢେଇ ଧରି ମରଣ ମୁହଁରୁ ରକ୍ଷାପାଇଥିଲେ । ଇଏ ଯେମିତି ପୁରାଣ କଥା, ତକ୍ଷକଠୁ ରକ୍ଷା ପାଇବାକୁ ସବୁ ପ୍ରକାର ସାବଧାନ ହେଲା ପରେ ନିର୍ଦ୍ଧାରିତ ସମୟରେ ସେଇ ତକ୍ଷକ କାମୁଡ଼ାରେ ମରଣ ମଧ ସେଇ ପୁରାଣ କଥା । ସାର ମର୍ମ ହେଲା ଜାତ ହେଲେ ମରଣ ଧ୍ରୁବ । ଧନ, କ୍ଷମତା, ଚାତୁରୀ କେହି ମରଣକୁ ଏଡ଼େଇ ପାରିବେ ନାହିଁ । ଶଙ୍କରାଚାର୍ଯ୍ୟ କହିଛନ୍ତି ଗୋବିନ୍ଦ ଭଜ ଗୋବିନ୍ଦ ସ୍ମରଣ କର । ଯେତେବେଳେ କାଳ ପୂରିବ ସେତେବେଳେ ଶାସ୍ତ୍ର କି ବ୍ୟାକରଣ କେହି ରକ୍ଷା କରିପାରିବେ ନାହିଁ ।

ହିନ୍ଦୁମାନେ ପୁନର୍ଜନ୍ମ ବିଶ୍ୱାସୀ । ପୁନରପି ଜନମ, ପୁନରପି ମରଣ, ପୁନରପି ଜନନୀ ଜଠରେ ଶୟନ । ସତରେ କ'ଣ ପୁନର୍ଜନ୍ମ ଅଛି ? ପୃଥିବୀର ଅନେକ ଯାଗାରେ ଲୋକ ଅତୀତ ଜୀବନର ସ୍ମୃତି ନେଇ ଜନ୍ମ ନେଇଥିବାର ଶୁଣାଅଛି । ତେବେ ବି ଏ ବିଷୟରେ ସନ୍ଦେହ । ପଶ୍ଚିମ ଲୋକେ କହନ୍ତି ଯେ ଏଇ ପୁନର୍ଜନ୍ମ ଧାରଣା ଯୋଗୁ ହିନ୍ଦୁ ଗୁଡ଼ାକ ଅଳସୁଆ । କାଳ ତ ନିରବଧି । ଏ ଜନ୍ମରେ ନୋହିଲେ ଆର ଜନ୍ମରେ ହେବ । କିନ୍ତୁ ଏଇଟା ଭୁଲ ଅର୍ଥ । ଏ ଜନ୍ମରେ ଭଲକାମ କଲେ ଆର ଜନ୍ମକୁ ଭଲ ଫଳ ମିଳିବ । ତେଣୁ ଖାଲି ଏଇ ଜନ୍ମର ସୁଖ ଆନନ୍ଦ ପାଇଁ ନୁହେଁ, ପର ଜନ୍ମପାଇଁ ମଧ ଏ ଜନ୍ମରେ ଭଲ କାମ କରିବାକୁ ହେବ । କେତେ ପୁଣ୍ୟ କଲେ ମଣିଷ ଯୋନିରେ ଜନ୍ମ । ଖରାପ କଲେ ପୁଣ୍ୟ କ୍ଷୟ ହେଲେ ନୀଚ ଯୋନିରେ ଜନ୍ମହେବ । ଆଉ ଯାହା ହଉ ନହଉ, ପୁନର୍ଜନ୍ମ ଭାବନା ମଣିଷକୁ ମରଣସଚେତନ କରେଇ ସଂସାରଚକ୍ରର ନାନା ଖାଲଖମା ବିଷୟରେ ଯେ ଜାଗ୍ରତ କରିଦିଏ ଏଥିରେ ତ ସନ୍ଦେହ ନାହିଁ । ଜୀବନ କ୍ଷଣସ୍ଥାୟୀ । ତେଣୁ ସୁଖ, ସମ୍ଭୋଗ କ୍ଷମତା ଆହରଣ ଏଇଥିରେ କାଳ ବିତେଇବା ଗୋଟିଏ ମତ । ଆଉ ଗୋଟିଏ ମତ ହେଉଚି,ଜୀବନର ଅଳ୍ପ ସମୟକୁ ପର ସୁଖ ପାଇଁ ଉତ୍ସର୍ଗ କର । ନିଜେ କାବ୍ୟ ଶାସ୍ତ୍ର ପଢ଼ି ଜୀବନ ମରଣର ଅର୍ଥ ବୁଝିବାକୁ ଚେଷ୍ଟା କର । ତର୍କ ସାଙ୍ଗକୁ ବିଶ୍ୱାସର ମଞ୍ଜି ପୋତ । ତେବେ ମରଣର ତପ୍ତ ବୈତରଣୀ ପାର ହେବାକୁ କଷ୍ଟ ହେବ ନାହିଁ ।

ପୁନର୍ଜନ୍ମ ବିଶ୍ୱାସ ଥାଉ ନ ଥାଉ ସ୍ୱର୍ଗ ନରକର କଳ୍ପନା ସବୁ ଦେଶରେ ସବୁ କାଳରେ ଅଛି । ଭଲ କାମରୁ ସ୍ୱର୍ଗ ଆଉ ଭେଲରୁ ନର୍କ । କଥା ହେଉଚି କ'ଣ ଭଲ ଆଉ କ'ଣ ଭେଲ ଏ ବିଷୟରେ ମତଭେଦ ଅଛି । ଏ ସବୁ ବିଷୟରେ ନାନା ଲୋକକଥା ବି ଅଛି । ଥରେ

କୁଆଡ଼େ ସ୍ୱର୍ଗ ଆଉ ନର୍କ ମଝିରେ ଥିବା ପାଚେରୀ ଭାଙ୍ଗିଗଲା । ନର୍କ ଗନ୍ଧରେ ସ୍ୱର୍ଗବାସୀମାନେ ଅସ୍ଥିର ହେଲେ । ପାଚେରୀ ପକେଇବାକୁ କହି କହି ଯେତେବେଳେ କିଛି ହେଲାନାହିଁ, ସ୍ୱର୍ଗବାସୀ ଧମକ ଦେଲେ ମକଦ୍ଦମା କରିବେ । ନର୍କରୁ ଜବାବ ଆସିଲା, ମକଦ୍ଦମା କର । ସବୁ ଓକିଲ ଆମ ପାଖରେ । ଆଉ ଗୋଟିଏ କଥା । ମରଣ ପରେ ଜଣକୁ ସ୍ୱର୍ଗ ନର୍କ ଦେଖେଇ ତାର ପସନ୍ଦ ପଚାରିବା ଠିକ କରାଗଲା । ତାକୁ ଯେତେବେଳେ ନିଆଗଲା ପ୍ରଥମ ଘରେ କୃଶ୍ଚେଭଙ୍କୁ ଏକ କୁତ୍ସିତ ସ୍ତ୍ରୀ ଲୋକ ବିତିବିତା କରୁଥିବାର ଦୃଶ୍ୟ । ଦ୍ୱିତୀୟ ଘରେ ଗାନ୍ଧୀଙ୍କ ସାଙ୍ଗରେ ବିଖ୍ୟାତ ସିନେମା ଅଭିନେତ୍ରୀ ମରଲିନ ମନରୋ । ଏଇ ଲୋକର ପ୍ରଶ୍ନର ଉତ୍ତରରେ କୁହାଗଲା ଯେ ପ୍ରଥମଟି କୃଶ୍ଚେଭଙ୍କର ଦଣ୍ଡ ଆଉ ଦ୍ୱିତୀୟଟି ମରିଲିନ ମନରୋର ଦଣ୍ଡ ।

ବୀରବଲ୍ଲଙ୍କର ସ୍ୱର୍ଗକୁ ଯିବା କଥା କିଏ ନ ଜାଣେ ? ଥରେ ବୀରବଲ୍ଲଙ୍କ ଶତ୍ରୁ ମନ୍ତ୍ରୀ ଆକବରଙ୍କୁ ତାଙ୍କ ଭଣ୍ଡାରୀ ଜରିଆରେ କୁହେଇଲେ ଯେ ଆକବରଙ୍କ ବାପା ବଡ଼ ଏକୁଟିଆ ଅନୁଭବ କରୁଛନ୍ତି । ସିଏ କିଛିଦିନ ପାଇଁ ବୀରବଲ୍ଲଙ୍କ ପରି ଏକ ଯୋଗ୍ୟ ଲୋକଙ୍କ ସଙ୍ଗଲାଭ ପାଇଁ ବ୍ୟସ୍ତ । ଆକବରଙ୍କ ଆଦେଶରେ ନିଆଁ ଜଳିଲା, ବୀରବଲ୍ଲ ତା ଭିତରେ ପଶି ସ୍ୱର୍ଗକୁ ଗଲେ । ଆକବର ବାଦଶାଙ୍କ ବାପା କ'ଣ ନର୍କରେ ଥାଆନ୍ତେ ? ବୀରବଲ୍ଲ ଆପଣା ବୁଦ୍ଧିରୁ ତଳେ ସୁଡ଼ଙ୍ଗ କଟେଇ ବଞ୍ଚିଗଲେ । ଯେତେବେଳେ ବୀରବଲ୍ଲ ମରିଗଲେ ବୋଲି ତାଙ୍କ ଶତ୍ରୁମାନେ ଖୁସି ହଠାତ ଦିନେ ବୀରବଲ ରାଜସଭାରେ ହାଜର । ଆକବର ପଚାରିଲେ ବାପା କେମିତି ଅଛନ୍ତି ? ବୀରବଲ୍ଲ କହିଲେ ସବୁ ଭଲ । ହେଲେ ଭଣ୍ଡାରୀ ନ ଥିବାରୁ ତାଙ୍କର ଦାଢ଼ି ବଢୁଚି ଆଉ କେତେକ ବିଷୟରେ ସିଏ ମନ୍ତ୍ରୀଙ୍କ ମସୁଧା ମାଗିଛନ୍ତି । ଆକବରଙ୍କ ଆଦେଶ ଦିହେଁ ଜଳନ୍ତା ନିଆଁରେ ପଶି ସ୍ୱର୍ଗକୁ ଯାଇ ତାଙ୍କ ବାପାଙ୍କୁ ଭେଟିବେ । ଦି ଜଣ ଯାକ ଆପଣା ହିଂସା ଆଉ କୂଟଚକ୍ରର ଫଳ ପାଇଲେ ।

ଶ୍ରୀରାଧା ଯେତେବେଳେ କୃଷ୍ଣ ବିରହ ପାଗଳିନୀ ସେତେବେଳେ ସିଏ କହିଥିଲେ ମରଣ ତୁ ମୋର ଶ୍ୟାମ ସମାନ । ଏଇ କଥାର ତର୍କଣା କରି ରବୀନ୍ଦ୍ରନାଥ କହିଛନ୍ତି, ରାଧା, ତୁ କିପରି ଚଞ୍ଚଳ ଚିତ୍ତ । ଜୀବନବଲ୍ଲଭ ମରଣଠୁ ଅଧିକ । ଉଭୟଙ୍କୁ କିପରି ସମାନ କରାଯାଇ ପାରିବ ? ମରଣ ଓ ଜୀବନ ବିଷୟରେ ବହୁ ଦାର୍ଶନିକ ତତ୍ତ୍ୱ ଅଛି । ବହୁ ଲୋକକଥା ଅଛି । କିନ୍ତୁ ଜୀବନତତ୍ତ୍ୱ ଯେ ମରଣଠାରୁ ବଡ଼ ଏ ବିଷୟରେ ସନ୍ଦେହ ନାହିଁ । ଜୀବନ ନେବା ଯେତେ ସହଜ, ଜୀବନ ଦବା ସେତେ ସହଜ ନୁହେଁ । ଜୀବନ ହେଉଚି ମରଣର ବିଜୟ । କିନ୍ତୁ ଏଇ ଜୀବନ ଚେତନା ନ ଥିବାରୁ କେତେ ଯେ ଲୋକ ଜିଅନ୍ତା ମରଣ ଭୋଗୁଛନ୍ତି ତାର କଳନା ନାହିଁ ।



# କ୍ଲବ

ବିଲାତି ଲୋକଙ୍କୁ ଗାଳି ଦେଇ ଆମେ ମଜା ଲୁଟିବାକୁ ଯେଉଁ କେତେକ ଅନୁଷ୍ଠାନ ଏ ଦେଶରେ ସାହେବମାନେ ଛାଡ଼ି ଯାଇଛନ୍ତି, ତା ଭିତରେ ପ୍ରଥମ ହେଉଚି କ୍ଲବ। କେମିତି ପୋଷାକ ପିନ୍ଧି କ୍ଲବକୁ ଯିବ, କିଏ କେଉଠି ବସି ମଦ ପିଇବ, କାହାର କେଉ ଯାଗାକୁ ପ୍ରବେଶ ଅଧିକାର ଏସବୁ ଏପରି ଭାବରେ ବାନ୍ଧି ଦିଆଯାଇଥିଲା ଯେ କାଳା ଭାରତୀୟମାନେ ଗୋରା ସାହେବଙ୍କ ଅନୁକରଣ ନ କଲେ କ୍ଲବ ଭିତରେ ପଶିବା ଅସମ୍ଭବ ଥିଲା। ସ୍ୱାଧୀନ ଭାରତରେ ଗହମବର୍ଣ୍ଣ ନେଟିଭଙ୍କର ସାହେବ ହେବା ଇଚ୍ଛା ମେଣ୍ଟେଇବା ପାଇଁ ଏଇ ନୀତି ନିୟମଗୁଡ଼ିକୁ କିପରି ଚାଲୁ ରଖାଯାଇଚି, ସେ ବିଷୟରେ ମୋ ଅନୁଭବରୁ ଦିପଦ କହେ।

୧୯୬୪ ମସିହାର କଥା। ପୁନାର ଏକ ବିଶିଷ୍ଟ କ୍ଲବରେ ଭାରତରେ ଥିବା ଗୋଟିଏ ଆମେରିକା ଶିକ୍ଷା ସଂସ୍ଥା ତରଫରୁ ଏକ ବିଶେଷ ଅନୁଷ୍ଠାନର ଆୟୋଜନ ହୋଇଥାଏ। ଆମେରିକାର ବିଶିଷ୍ଟ ବିଦ୍ୱାନ ନର୍ମାନ ବ୍ରାଉନ ପୌରହିତ୍ୟ କରିବେ ଓ ଭାରତର ବିଶିଷ୍ଟ ବିଦ୍ୱାନ ସୁନୀତି କୁମାର ଚାଟର୍ଜୀ ମୁଖ୍ୟଅତିଥିରୂପେ ଯୋଗ ଦେବେ ବୋଲି ସ୍ଥିର ହୋଇଥାଏ। ଆମେ ସମସ୍ତେ ମୁଖ୍ୟ ଅତିଥିଙ୍କୁ ପାଛୋଟିବାକୁ ଅପେକ୍ଷା କରିଥାଉ। ଠିକ୍ ସମୟରେ ମୁଖ୍ୟଅତିଥି ପହଞ୍ଚିଲେ। କ୍ଲବର ଜଣେ କର୍ତ୍ତା ଆସି ଜଣେଇ ଦେଲେ ଧୋତି ପଞ୍ଜାବୀ ପିନ୍ଧା ଲୋକଙ୍କର କ୍ଲବରେ ପ୍ରବେଶ ନିଷେଧ। ସୁନୀତି ବାବୁ ରାଗରେ ନିଆଁବାଣ। ଏଇଟା ଭାରତ ନା ବିଲାତ ? ଶୁଣୁଚି କିଏ ? ନିୟମ ତ ନିୟମ। ପ୍ରାୟ ଅଧଘଣ୍ଟାଏ ପାଟିତୁଣ୍ଡ ହେଲା ପରେ, କର୍ମକର୍ତ୍ତାମାନେ ଲାଜରା ହେଲାପରେ, ଖବରକାଗଜବାଲାଏ ପରଦିନ କାଗଜ ପାଇଁ ଯଥେଷ୍ଟ ଖୋରାକ ଯୋଗାଡ଼ କଲାପରେ, ଆମ ନାକ ନିଶ ତଳେ ପଡ଼ିଲା ପରେ କ୍ଲବ ସଭାପତିଙ୍କ ସ୍ୱତନ୍ତ୍ର ଅନୁମତି କ୍ରମେ ଆମେ ଯେତେବେଳେ ଭିତରକୁ ଗଲୁ ସେତେବେଳକୁ ଅନୁଷ୍ଠାନର ଉତ୍ସାହ ମଉଳି ଯାଇଥିଲା।

ତାର କେତେବର୍ଷ ପରେ ମୁଁ ମାଡ୍ରାଜ ଆସିଥିଲି। ଜଣେ ବନ୍ଧୁଙ୍କ ସାଙ୍ଗରେ ଗୋଟିଏ କ୍ଲବକୁ ଗଲାବେଳକୁ ଇଂରାଜୀରେ ଯେଉଁ ଲେଖା କବାଟରେ ଲାଗିଥିଲା ତାର ଅର୍ଥ ହେଲା କୁକୁର ଓ ଭାରତୀୟଙ୍କ ପ୍ରବେଶ ନିଷେଧ। ଲାଜ ଲାଗିଲା ଯେ ଏଇ ନୋଟିସ ଏଯାଏ କୌଣସି ଭାରତୀୟଙ୍କ ଆତ୍ମସମ୍ମାନ ଜ୍ଞାନରେ ଆଘାତ ଲଗେଇ ନାହିଁ।

ମନେ ପଡ଼ିଗଲା ୧୯୬୧ ରେ ମୋର ଆମେରିକାରୁ ଭାରତକୁ ଫେରିବା କଥା। ବମ୍ବେ ଉଡ଼ାଜାହାଜ ଘାଟିରେ ଓହ୍ଲେଇଲା ସାଙ୍ଗେ ସାଙ୍ଗେ ଶାଗୁଣା ପରି ଦଳେ ଘେରିଗଲେ। ଡ଼ଲାର ଦିଅ। ଡ଼ଲାରକୁ ଆଠଟଙ୍କା ନିଅ। ସେତେବେଳେ ଡ଼ଲାର ଭାଉ ପାଞ୍ଚ ଟଙ୍କା ଥିଲା। ଖାଲି ସେତିକି ବେଳେ ନୁହେଁ, ପ୍ରତିଥର ବିଦେଶରୁ ଫେରିଲା ବେଳେ ସେଇ ଏକା ଅନୁଭବ।

ଯାହା ଅଧିକ ନେବ ନିଅ । ଡ଼ଲାର ଆମକୁ ବିକ । ୧୯୭୧ର କଥା । ମୁଁ ଆମେରିକାରୁ ଟୋକିଓ ବାଟ ଦେଇ ଭାରତକୁ ଫେରୁଥାଏ । ମୋର ଜଣେ ବନ୍ଧୁ ଟୋକିଓରୁ ଗୋଟିଏ ଟେପ ରେକର୍ଡ଼ର କିଣି ତାକୁ ଡ଼ାକରେ ପଠେଇବାକୁ ଦୁଇଶ ଡ଼ଲାର ଦେଇଥାନ୍ତି । ଟୋକିଓ ଦୋକାନରେ ଜିନିଷ କିଣି ବନ୍ଧାବନ୍ଧି କରି ଦାମ ବାବଦକୁ ମୁଁ ଦୁଇଶ ଡଲାର ଦେଲି । ଦୋକାନୀ ବିନୀତ ହୋଇ କହିଲା, ପଡ଼ିଶା ଘର ବ୍ୟାଙ୍କ । ଆପଣ ଏ ଟଙ୍କା ବଦଳେଇ ଆମ ପଇସାରେ ମତେ ଦାମ ଦିଅନ୍ତୁ । ଜାପାନୀ ଲୋକ ଚରିତ୍ରବତ୍ତା ପ୍ରତି ମୋର ସମ୍ମାନ ଯେତିକି ବଢ଼ିଲା, ସେମାନଙ୍କ ସାଙ୍ଗେ ତୁଳନା କରି ନିଜକୁ ସେତିକି ସାନ ମନେ ହେଲା । ଏଇପରି ଚରିତ୍ର ଯୋଗୁ ହଲାଣ୍ଡିଆ ଲୋକେ ଗୋରା ମାନଙ୍କୁ ଯେପରି ପାଲଟା ଜବାବ ଦେଇ ପାରିଲେ ଆମେ ସେପରି ପାରିଲୁ ନାହିଁ ।

ସତୁରୀ ଦଶକର କଥା । ମୁଁ ମାନ୍ଦ୍ରାଜରେ ଥାଏ । ଆମେରିକାର ଜଣେ ବିଶିଷ୍ଟ ଐତିହାସିକ ବନ୍ଧୁ ଟେଲିଫୋନ କଲେ । ସିଏ ଆସୁଛନ୍ତି । ମତେ ନେଇ ତାଙ୍କ କ୍ଲବକୁ ଯିବେ । ଗରମ ଦିନ ଦ୍ୱିପହର । କାମ କିଛି ନ ଥିଲା । ମୁଁ ରାଜି ହେଇଗଲି । କ୍ଲବରେ ଭଦ୍ରଲୋକ ପହଁରା କୁଣ୍ଡ ପାଖରେ ଦୁଇଟି ଚଉକି ପକେଇ ସେଠାରେ ମତେ ବସିବାକୁ କହିଲେ । ଆମେ ବସିଲା ପରେ ବେଆରାରକୁ ଡ଼ାକି ବିଅର ବରାଦ କଲେ । କିଛି ବେଳ ବିତିଗଲା । ଭଦ୍ରଲୋକଙ୍କ ଡ଼ାକରେ ବେଆରାର ସନ୍ତ୍ରସ୍ତ ଭାବେ କହିଲା, ଆଜ୍ଞା ଏଠି ବସି ପିଇବା ମନା । ଭଦ୍ରଲୋକଙ୍କ ଗଳା ଆଉ ମାତ୍ରାଏ ଚଢ଼ିଲା । ମୁଁ ଏ କ୍ଲବର ସଭ୍ୟ । ସବୁଦିନ ଏଇଠି ବସି ପିଏ । ଆଜି ମନା କାହିଁକି ? ବେଆରାର ମୁଣ୍ଡ କୁଣ୍ଡେଇ ମୋ ଆଡ଼କୁ ଠାରି କହିଲା, ଆଜ୍ଞା ଏଠି ବସି ଭାରତୀୟଙ୍କର ପିଇବା ମନା । ଭଦ୍ରଲୋକଙ୍କ ମୁହଁ ଲାଜ ଓ ରାଗରେ ନାଲି ହେଇଗଲା । ମୁଁ ବୁଝେଇ କହିଲି । ଏଇଟା ମୋ ଦେଶ । ମତେ ଲାଜ ଲାଗିବା କଥା । ତମେ କାହିଁକି ରାଗୁଚ । ଚାଲ ଘର ଭିତରେ ବସିବା ।

ମତେ ବଡ଼ କଉତୁକ ଲାଗିଲା । ଭାରତୀୟ ଯଦି ଭିତରେ ବସି ପିଇ ପାରିବେ ତେବେ ସେଠି ବସି ପିଇବାରେ ଆପତ୍ତି କଣ ? ଝରଝର ପାଣି ବୋହି ପଡୁଥିବା ଦର ଲଙ୍ଗୁଳି ଜଣେ ମଝି ବୟସର ସ୍ତ୍ରୀ ଲୋକଙ୍କୁ ପାଣିରୁ ଭାସି ଆସୁଥିବା ଦେଖି ସବୁ ପ୍ରାଞ୍ଜଳ ହେଇଗଲା । ମଦୁଆ ଧଳା ଲୋକେ ଏପରି ସ୍ତ୍ରୀକୁ ଦେଖି ମଥା ଥଣ୍ଡା ରଖି ପାରିବେ । କିନ୍ତୁ ଭାରତୀୟଙ୍କୁ କଣ ବିଶ୍ୱାସ ଅଛି ? ଯଦି ବି ଗୋରା ଲୋକ ଟିକିଏ ବେଆଡ଼ା ବ୍ୟବହାର କରନ୍ତି ତେବେ ସେଥିରେ ବିଶେଷ କ୍ଷତି ନାହିଁ । ଗୋରା ଚମଡ଼ା । ଚାରିଖୁଣ ମାଫ । କିନ୍ତୁ ଯଦି କେହି ଭାରତୀୟ ବେଆଡ଼ା ବ୍ୟବହାର କରନ୍ତି ? ବନ୍ଧୁଙ୍କୁ କହିଲି, ସିଏ ହସିଲେ । ପରେ ସେ କ୍ଲବର କର୍ମକର୍ତ୍ତାଙ୍କୁ ପଚାରି ବୁଝିଲେ ମୁଁ ଯାହା ଭାବିଥିଲି ସତ ।

ଆଉ ଗୋଟିଏ କ୍ଲବର ନିୟମ ସ୍ତ୍ରୀ ଲୋକ ବାର୍‌କୁ ଯାଇ ପାରିବେ ନାହିଁ । ଜଣେ ସଭ୍ୟ ଓ ତାଙ୍କ ଅତିଥି ତାଙ୍କ ବିଲାତି ସ୍ତ୍ରୀଙ୍କ ସହ ସେଇ କ୍ଲବକୁ ଆସିଲେ । ବିଲାତି ସ୍ତ୍ରୀ ରାଗି ମାଗି କାଇଁ । ପ୍ରଥମ କଥା, ଭାରତୀୟଙ୍କୁ ଅବା କିଛି ଯାଗା ମନା ହୋଇପାରେ, କିନ୍ତୁ ବିଲାତିକୁ ମନା ହେବ କେମିତି ? ଦ୍ୱିତୀୟରେ କ୍ଲବରେ ଯାହାଙ୍କ ଜୀବନ ଗଢ଼ା ତାଙ୍କୁ ଯଦି ବାହାରେ ରଖିଲ ତେବେ କ୍ଲବ ସଂସ୍କୃତି ଶିଖିବ କେଉଁଠୁ ? ଏ ସମସ୍ୟାର ଶେଷ ପର୍ଯ୍ୟନ୍ତ କଣ ସମାଧାନ ହେଲା ମୁଁ ଜାଣେ ନାହିଁ ।

ଶେଷକୁ ଆଉ ଗୋଟିଏ କଥା । କଲିକତାର ଗୋଟିଏ ବଡ଼ ହୋଟେଲର ଏକ ବିଶେଷ ଅଂଶକୁ କିଛି ଗୋଟାଏ କ୍ଲବ ନାଁ ଦିଆଯାଇଥାଏ । ଇଏ ବି ସେଇ ସତୁରୀ ଦଶକର କଥା । ମୁଁ କାମରେ ସେଇ ହୋଟେଲରେ ରାତିଏ ରହିବାକୁ ବାଧ ହେଲି । କଥା ହେଲା ଆମେ କେତେଜଣ ବନ୍ଧୁ ହୋଟେଲର ସେଇ ଅଂଶରେ ବସି ଖାଇବୁ । ଆମେ ସେଠି ପହଞ୍ଚିଲା ସାଙ୍ଗେ ସାଙ୍ଗେ ମତେ କୁହାଗଲା, ବିନା ଜାକେଟରେ ସେ ଭିତରେ ପଶିବା ମନା । ମୁଁ କହିଲି, କି ଆଶ୍ଚର୍ଯ୍ୟ ବିନା ଜାକେଟରେ ଯଦି ମୁଁ ସେ ହୋଟେଲରେ ରହିବାଯୋଗ୍ୟ ହେଲି ତେବେ ଖାଇବାକୁ ଜାକେଟ ଲୋଡ଼ା କାହିଁକି ? ଗରିଆଡ଼େ ଗପା ଗଳାର ଗୁଂଜନ । କ'ଣ କରାଯିବ । ଶେଷକୁ ଜଣେ ଭଦ୍ରଲୋକ ଗୋଟିଏ କଳା ଜାକେଟ ଧରି ଆସିଲେ । ଏଇଟା ପିନ୍ଧି ଭିତରକୁ ଯାଆନ୍ତୁ । ମୁଁ ଅଜଣା ଲୋକର ବ୍ୟବହାର କରା ପୋଷାକ ପିନ୍ଧିବାକୁ ମନା କରିଦେଲି । ଖାଇବା ଦରକାର ନାହିଁ । ଆମେ ବାହାରେ ଖାଇବୁ । ପୁଣି ମସୁଧା ଗଲିଲା । ଶେଷକୁ ସାଲିସ ହେଲା । ସେଇ କୋଟ୍‌ଟି ଧରି ମୋ ପଛରେ ଗୋଟିଏ ବେଆରା ଯିବ । ଆମେ ବସିଲା ପରେ ମୋ ଚଉକି ପଛରେ ସେଇ କୋଟଟି ଝୁଲେଇ ଦବ । ଉଭୟ ପକ୍ଷରେ ମାନରକ୍ଷା । ହସ ମାଡ଼ିଲା । ସେତେବେଳକୁ ବହୁତ ଡେ଼ରି ହେଲାଣି । ଆଉ କଥା ନବଢେଇ ସେଦିନ ଆମେ ଖାଇ ଫେରିଲୁ ।

ଏବେ କେତେଦିନ ତଳେ ମୁଁ ମାନ୍ଦ୍ରାଜରେ ଥିଲାବେଳେ ଜଣେ ବିଶେଷ ବନ୍ଧୁଙ୍କୁ ଭେଟିବାକୁ ଜିମ୍‌ଖାନା କ୍ଲବ୍ ଯିବାକୁ ଡାକରା ଆସିଲା । ମୁଁ ଯାଇ ପାରିଲି ନାହିଁ । କିନ୍ତୁ ଏଇ ପଛକଥା ଗୁଡ଼ିକ ହଠାତ ଆଖି ଆଗରେ ନାଚିଗଲା । ଜଣେ ବନ୍ଧୁଙ୍କୁ ପଚାରିଲି ଜିମଖାନା କ୍ଲବ୍ ବଦଳିଚି କି ନାହିଁ ? ବନ୍ଧୁ ଦୀର୍ଘନିଶ୍ୱାସ ପକେଇ କହିଲେ ଆଉ କଣ ସେ ପୁରୁଣା ଥାଟ ଅଛି ? କର୍ପୂର ଉଡ଼ି ଯାଇଚି, ଖାଲି କନା ପଡ଼ିଚି । କ୍ଲବ୍ ଜୀବନ ପାଇଁ କଳାଲୋକଙ୍କ ଅଯୋଗ୍ୟତା ପ୍ରତି ଏଇଟା ବନ୍ଧୁଙ୍କ ଆକ୍ଷେପ । ଧଳାଲୋକଙ୍କ ମୁକାବିଲାରେ ଆମ ଅପାରଗତା ପ୍ରତି ଟିପ୍ପଣୀ ।



# ଅନ୍ଧ କିଏ

ପିଲାଦିନର ଶୁଣା କଥା, ମାମୁଁଙ୍କ କାନରେ ବାଳ ହେଲେ ଭଣଜାର କପାଳ ଫିଟିଲା ବୋଲି ଜାଣ । କିନ୍ତୁ ବଡ଼ ହୋଇ ଯେତେବେଳେ ସବୁ ଚେଷ୍ଟା ସତ୍ତ୍ୱେ ଯୋଉ ଫକଡ଼କୁ ସେଇ ଫକଡ଼, ଅଗ୍ନିଦୃଷ୍ଟି ପଡ଼ିଲା ମାମୁଁଙ୍କ ଟାଙ୍ଗରା କାନରେ । ସେଇଠୁ ଆରମ୍ଭ ହେଲା ବାର ଓଷା ତେର ପାର୍ବଣ । ଠାକୁରଙ୍କୁ ମନେଇବାକୁ ହେବ । ପାଖରେ ମହାଦେବଙ୍କ ଦେଉଳ । ସକାଳ ସଞ୍ଜରେ ଶିବଲିଙ୍ଗରେ ପାଣି ଢ଼ାଳି, ବେଲପତ୍ର ଚଢ଼େଇବା ଲୋକଙ୍କର କ୍ରମେ ଆଖିସହା ହୋଇଗଲା । ସତକୁସତ ଦିନେ ଶିବଙ୍କ ନିଦ ଭାଙ୍ଗିଲା । ସେଦିନ ଦେଉଳରେ କେହି ନାହାନ୍ତି । ତ୍ରିସନ୍ଧ୍ୟାରେ ଆଲୁଅ ମହଳଣ ହେଇ ଆସିଲାଣି । ମାଛି ଅନ୍ଧାରରେ ସତେ ଯେମିତି ଲିଙ୍ଗ ଭିତରୁ ଶିବ ବାହାରି ଠିଆ ହେଇଗଲେ । ସପନ ପରି ଲାଗୁଚି । ଶିବ ପଚାରିଲେ କ'ଣ ଦରକାର ମାଗ । ପାଟିରୁ ବାହାରିଗଲା, ମହାପ୍ରଭୁ, ମୋ ମାମୁଁଙ୍କ କାନରେ ବାଳ ହେଉ । ସାଙ୍ଗେ ସାଙ୍ଗେ ମାମୁଁଙ୍କ କାନରେ ବାଳର ଯୋଉ ଜଙ୍ଗଲ ହେଲା, ସେଥିରେ ସିଏ ବିତିବିତା । ଭଣଜା ଯୋଉ ଫକଡ଼କୁ ସେଇ ଫକଡ଼ ।

ଆପଣ କଣ ଭାବୁଛନ୍ତି ମାମୁଁଙ୍କୁ ହଟହଟା କରିବାକୁ ଭଣଜାଙ୍କର ଇଏ ଫନ୍ଦି ? ନାଇଁ ନାଇଁ । ଇଏ ହେଲା ଦ୍ରାବିଡ଼ ପ୍ରାଣାୟମ । ମୁଣ୍ଡ ପଛରେ ହାତ ବୁଲାଇ ନାକ ଛୁଇଁବା । ଲୋକଜ୍ଞାନ ଆଉ ଫମ୍ପା ଲୋକକହା ଭିତରେ ଫରକ ନବୁଝିବା ପରିଣାମ । କିଓ ବାବୁ, ମତେ ବଡ଼ଲୋକ କର କହିଥିଲେ ତ ଭୋଳା ଶଙ୍କର ସବୁ ଦେଇଥାନ୍ତେ । ମାମୁଁଙ୍କୁ ଦହଗଞ୍ଜ କରି କି ଲାଭ ? କଥା ହେଲା ଅନ୍ଧବିଶ୍ୱାସ ଆଉ ଲୋଭ ।

ଅନ୍ଧବିଶ୍ୱାସ କେମିତି ? ବାହାବେଦୀରେ ଧଳାନାକି କଳା ବିଲେଇ ବାନ୍ଧିଲାମିତି । ପୁଅ ଝିଅ ବେଦୀରେ ବସିଛନ୍ତି । ମୁହୂର୍ତ୍ତ ଗଡ଼ି ଯାଉଚି । ଏଣେ ଘରର ସଭିଏଁ ଧଳାନାକି କଳା ବିଲେଇ ଖୋଜିବାରେ ବ୍ୟସ୍ତ । ପରିବାରର ରୀତି ବେଦୀ ଖୁଣ୍ଟରେ ଏପରି ଗୋଟିଏ ବିଲେଇ ବନ୍ଧା ନୋହିଲେ ହାତଗଣ୍ଠି ପଡ଼ିବ ନାଇଁ । କନ୍ୟାଘରର ମୁରବୀ ପଚାରିଲେ, ପୁରୋହିତ କୋଉ ଶାସ୍ତ୍ରରେ ଏପରି ବିଧାନ ଅଛି ? ପୁରୋହିତ କହିଲେ, ଇଏ ଶାସ୍ତ୍ର କଥା ନୁହେଁ, କୁଳରୀତି । ଦେଖୁ ନାହାନ୍ତି, ବେବର୍ତ୍ତା ଘର ଶ୍ରାଦ୍ଧରେ ଗୋଟିଏ ଅଧିକ ପତ୍ର ପଡ଼େ, ଯାହା ନାଁ ମିଛୁ ପତ୍ର । ଏଥିରେ ରନ୍ଧାସାମଗ୍ରୀ ବଢ଼ାଯାଏ । ବ୍ରାହ୍ମଣ ଖାଆନ୍ତି । କୋଉକାଳେ ବ୍ରାହ୍ମଣଙ୍କୁ କରଣ ଘରେ ରନ୍ଧା ଜିନିଷ ଖୁଆଇବାକୁ ଏ ବିଧାନ ହୋଇଥିଲା । ଚଳିଗଲା । ଇଏ ସେମିତି କିଛି ବିଧାନ ହୋଇଥିବ ପରା । ଏଣେ ବରଘର ଲୋକେ ବିଲେଇ ଖୋଜିଲାବେଳେ କନ୍ୟା ଘର ଲୋକେ ଗାଁର ବୁଢ଼ାବୁଢ଼ୀଙ୍କି ଏ ବିଷୟରେ ପଚରା ଉଚୁରା ଲଗେଇଛନ୍ତି । ଗାଁର ସବୁଠୁ ବୁଢ଼ା ମାଗୁଣି ମାଷ୍ଟ୍ରେ । ଅନେଶ୍ୱତ ବର୍ଷରେ ବି ଦାନ୍ତ ପଡ଼ିନାଇଁ

କି ଆଖିର ତେଜ ଯାଇନାହିଁ । ପ୍ରଶ୍ନ ଶୁଣି ମାଷ୍ଟ୍ରେ ବହୁତ ହସିଲେ । ପୂଅ ଘର ଏକ ପାଢ଼ିର ତିନି ପୁରୁଷ ତଳେ କୋଉ ଗୋଟିଏ ବାହାଘରରେ ଧଳାନାକି କଳା ବିଲେଇଟିଏ ହୋମ ଘିଅ ଖାଇଦେଇଥିଲା । କର୍ତ୍ତା ତାକୁ ଧରି ବେଦୀ ଖୁଣ୍ଟରେ ବାନ୍ଧି ଦେଇଥିଲେ । ସେଇଦିନୁ ଯାକୁ ବିଧାନ ବିଚାରି ଅନ୍ଧ ଭାବରେ ସଭିଏଁ ଅନୁସରଣ କରୁଛନ୍ତି । ବରପକ୍ଷ କାନକୁ କଥାଗଲା । ସମସ୍ତେ ଲାଜରା ହେଲେ । ବାହାଘର ହେଲା । ଆଜିଯାଏ ବରକନ୍ୟା ଭଲରେ ଅଛନ୍ତି ।

ଏ ଉଭୟେ ଅଜ୍ଞାନ ଅନ୍ଧ । ପାଠୁଆ ଅନ୍ଧ କ'ଣ କମ୍ ଅଛନ୍ତି ? ଆମ ଦେଶରେ ସ୍କୁଲ କଲେଜରେ ବହୁତ ପାଠପଢ଼ିବା ଲୋକେ ଆମ ଦେଶର ସବୁ ପୁରୁଣା କଥାକୁ ମଧ୍ୟଯୁଗୀୟ କହି ନାକ ଟେକନ୍ତି । ସେଦିନ ଜଣେ ଆମେରିକା ଫେରନ୍ତା ଦକ୍ଷିଣ ଭାରତୀୟ ବନ୍ଧୁ ନିଜଆଡ଼ର ଚଳଣିକୁ ନାପସନ୍ଦ କରି କହିଲେ, ବୁଝିଲେ ଆଜ୍ଞା, ଆମର ଯୋଉ Oil bath ସେଇଟା ଖାଲି Luxury ନୁହଁ, ସମୟ ନଷ୍ଟ, ଲୁଗାପଟା ବିଛଣାପତ୍ର ଅପରିଷ୍କାର, ମୋଟାମୋଟି କୁସଂସ୍କାର । ମୋ ଆଡୁ କୌଣସି ଉତ୍ସାହ ନଦେଖି ବନ୍ଧୁ ଟିକିଏ ଦବିଯାଇ କହିଲେ, କ'ଣ ଆପଣ ଏଥିରେ ଏକମତ ନୁହନ୍ତି ? ମୁଁ କହିଲି, ଆମ ଆଡ଼େ ଠିକ୍ Oil bath ନାହିଁ । ତେବେ ମୋ ପିଲାଦିନେ କାଠୁଆ କାଠୁଆ ତେଲ ହଳଦୀ ମୋ ଦିହରେ ଘଷା ହେଇଚି । ଲୁଗା ତ ନିଶ୍ଚେ ମଇଳା ହେଇଥିବ, କିନ୍ତୁ ଚର୍ମରୋଗ ମୋର ହେଇନି । ସେଦିନ ଆପଣଙ୍କ ଘରେ ତ ମୁଁ ଭିକୋ ବଜ୍ରଦନ୍ତୀ ହଳଦୀ ସ୍ନୋ ଦେଖିଥିଲି । କୋଉ ଗୁଣରେ ଅତି ପୁରୁଣା ତେଲ ହଳଦୀ ନାହିଁକରା ? ପୁଣି ଦକ୍ଷିଣରେ ସପ୍ତାହରେ ତିନିଦିନ Oil bathର ବିଧି ଥିଲା । ଏଇ ତିନି ଦିନ Sex ମନା । କି ସୁନ୍ଦର ଭାବରେ ସାମାଜିକ ଚଳଣି ଭିତରେ ପରିବାର ନିୟନ୍ତ୍ରଣ ସୂତ୍ର ବାନ୍ଧି ଦିଆଯାଇଥିଲା । ଗାଁରେ ସିନା ପାଠ ଅଭାବରୁ ଅନ୍ଧ, ଆପଣମାନେ ପାଠ ଅନ୍ଧ । ବନ୍ଧୁ ଲାଜରା ହେଲେ ।

କ୍ଷମତା ଅନ୍ଧଙ୍କ କଥା କହି ବସିଲେ ହିଟ୍‌ଲରଠାରୁ ଆରମ୍ଭ କରି ଆମ ଏବକାର ଏମ.ଏଲ୍.ଏ. ହଟବାବୁଙ୍କ ଯାଏ ପୋଥି ଲେଖି ହେବ । ଆମ ଗଡ଼ଜାତର କୋଉ କ୍ଷମତା ଅନ୍ଧ ରଜା ଗୋଟି ଗୋଟି ନିଶ ଉପାଡୁଥିଲେ, ଝିଅ ବୋହୂଙ୍କ ଇଜ୍ଜତ ଲୁଟୁଥିଲେ, ଘରଦ୍ୱାର ନିଲାମ କରୁଥିଲେ, ଆଉ ରାଜ୍ୟ ଲୋକଙ୍କୁ ହତସତ କରୁଥିଲେ, ଯାର ଇତିହାସ ଏବେ ବି ଲୋକଙ୍କ ଅନୁଭବରେ ଅଛି । ଏବକାର କ୍ଷମତା ଅନ୍ଧ ଅଧିକାରୀଙ୍କର ପ୍ରଣାଳୀ ବଦଳିଚି କିନ୍ତୁ ପ୍ରକୃତି ବଦଳି ନାହିଁ । ଧର୍ମ ପାଇଁ, ଜାତି ପାଇଁ, ଗୋଷ୍ଠୀ ପାଇଁ, ସ୍ୱାର୍ଥ ପାଇଁ ଆଜିର କ୍ଷମତା ଅନ୍ଧ ଅଧିକାରୀଙ୍କ କୀର୍ତ୍ତି ଲେଖିବା ପରି ନିର୍ଭୀକ ଲୋକଙ୍କ ସଂଖ୍ୟା କ୍ରମେ କମି ଆସୁଚି ।

ହିଂସାରେ ଦିହ ଜଳିବା କଥା ଆପଣ ହୁଏତ ଅଂଗେ ନିଭେଇଛନ୍ତି । କିନ୍ତୁ ହିଂସାରେ

ଅନ୍ଧ ହେଇଯିବା କଥା ଆପଣ ଜାଣନ୍ତି ? ସେ ଗାଁ ମାହାପାତ୍ରେ ଏ ଗାଁ ମିଶ୍ରଙ୍କ ଶିରୀ ଦେଖି ପାରନ୍ତି ନାଇଁ । ମିଶ୍ରଙ୍କର କେମିତି କ୍ଷତି ହେବ ସବୁବେଳେ ଏଇ ଚିନ୍ତା । ମିଶ୍ରଙ୍କ ବଢ଼ତି ଶୁଣିଲେ ମାହାପାତ୍ର ଖପା । ସବୁ କାମକୁ ତ ଶିବ ଶରଣ ! ଭୋଳା ଲୋକ, ମନେଇବା ସହଜ । ମାହାପାତ୍ରେ ଶିବଲିଙ୍ଗ ଅଭିଷେକ କଲେ, ଲକ୍ଷେ ବେଲପତ୍ର ଚଢ଼େଇଲେ । ବ୍ରତ, ଉପାସ, ପୂଜା, ପାର୍ବଣରେ ଶିବ ଖୁସି ହେଲେ । ଶିବ ପଚାରିଲେ କ'ଣ ଦରକାର ? ମାହାପାତ୍ରେ କହିଲେ, ମୁଁ ମିଶ୍ରଙ୍କ ପାଇଁ ଯାହା ମନାସିବି ତା ହେବ । ଶିବ କହିଲେ, ତଥାସ୍ତୁ । ତେବେ ଗୋଟିଏ କଥା । ତୁ ତା ପାଇଁ ଯାହା ମନାସିବୁ ତୋର ଦିଗୁଣା ହେବ । ମାହାପାତ୍ରେ ବରପାଇ ଏତେ ଖୁସି ଯେ ଏକଥାର ଅର୍ଥ ବୁଝିବାକୁ ବେଳ ନାଇଁ । ଆଗେ ମନାସିଲେ ମିଶ୍ରର କାନୀଗାଈ ମରୁ । ଇଏ କ'ଣ ହେଲା ? ମିଶ୍ରଙ୍କ କାନୀଗାଈ ସାଙ୍ଗକୁ ମାହାପାତ୍ରଙ୍କ ଦୁଇଟି ଗାଈ ପାଣପଡ଼ାକୁ ଗଲେ । ମାହାପାତ୍ରଙ୍କ ରାଗ ଚଢ଼ିଲା । କହିଲେ ମିଶ୍ରର ଗୋଟିଏ ଗୋଡ଼ ଭାଙ୍ଗିଯାଉ । ତାଙ୍କର ତ ଗଲା, ମାହାପାତ୍ରଙ୍କ ଦି ଗୋଡ଼ ଭାଙ୍ଗିଲା । ଯାହାହେଉ ମିଶ୍ରର ଧାଁ ଦଉଡ଼ ବନ୍ଦ ହେଲା । ବିଛଣାରେ ପଡ଼ିପଡ଼ି ମାହାପାତ୍ରେ ମନାସିଲେ ମିଶ୍ର କଣା ହେଉ । ମିଶ୍ରେ କଣା ହେଲେ କିନ୍ତୁ ମାହାପାତ୍ରେ ଅନ୍ଧ ହେଲେ । ଆପଣା ହିଂସାର ଜାଲା ତାଙ୍କୁ ଅନ୍ଧ କଲା ।

ପ୍ରେମରେ ବି ଲୋକେ ଅନ୍ଧ ହୁଅନ୍ତି । ସାମସନ ପରି ବଳୁଆ ଲୋକ ପ୍ରେମରେ ପଡ଼ି ଖାଲି ଚୁଟି ହରେଇଲା ନୁହେଁ, ଆଖି ହରେଇ ଅନ୍ଧ ହେଲା । କିଏ ପ୍ରେମରେ ଅନ୍ଧ ହେଇ ଆତ୍ମହତ୍ୟା କଲାଣି ତ ଆଉ କିଏ ସ୍ୱାମୀ ହତ୍ୟା କି ସ୍ତ୍ରୀ ହତ୍ୟା କଲାଣି । ଆଜିକାଲିକାର ଖବର କାଗଜରେ ନିତିଦିନ ଏଇ ଖବର । କେଉଁଠି ଷୋଳ ବରଷ ଝିଅ ଷାଠିଏ ବରଷର ପୁଅକୁ ବାହା ହେଲେଣି ତ କୋଉଠି କୋଡ଼ିଏ ବର୍ଷର ପୁଅ ଷାଠିଏ ବର୍ଷ ଝିଅ ସାଙ୍ଗରେ ଘର ବାନ୍ଧିଲାଣି । ପ୍ରେମ ଯୋଗୁଁ ଏଇପରି ଆଖିରେ ନଦେଖିବା କାନରେ ନଶୁଣିବା ବ୍ୟବହାର ତ ପ୍ରେମ ଅନ୍ଧର ଲକ୍ଷଣ । ମୋ ପଢ଼ିଲାବେଳେ ଅଦ୍ଭୁତ ଏକ ଅନ୍ଧ ମୁଁ ଦେଖିଥିଲି । ସେ ଏକ ଆଦର୍ଶ ଝିଅର ପ୍ରେମରେ ପଡ଼ିଥିଲା । ସେଇ ଝିଅର ଆଖି, ହାତ ପାପୁଲି ଆଉ ପାଦ ପଦ୍ମପରି, ବେକ ଶଙ୍ଖ ପରି, ନାକ ନର୍ଗିସ୍ ପରି, ମୀନାକୁମାରୀ ପରି ଉଦାସ ଉଦାସ ଭାବ, ହସିଲେ ଶର୍ମିଳାଠାକୁର ପରି ଗାଲରେ ଡିମ୍ପିଲ ଥିବ ଆଉ ଚାଲିରେ ଗଜଗମନା । କାଚ ଭିତର ଦେଇ ଆରପାଖ ଦେଖିଲା ପରି ସିଏ ସବୁ ଝିଅଙ୍କ ଭିତର ଦେଇ ବାହାରକୁ ଦେଖେ । କୌଣସି ଝିଅ ତା ଆଖିରେ ପଡ଼ିଲା ନାଇଁ । ସିଏ ବିଚାରା ଜୀବନ ଯାକ ଅଭିଆଡ଼ା ରହିଲା । ଇଏ ଆଖିଥାଇ ଅନ୍ଧ ।

ଆପଣ ନିଶ୍ଚୟ ବୀରବଲଙ୍କ କଥା ଜାଣିଛନ୍ତି । ଆକବର କହିଲେ ବୀରବଲ, ଆମ ରାଜ୍ୟରେ କେତେ ଅନ୍ଧ ଅଛନ୍ତି, ଜନସୁମାରୀ କର । ତାଙ୍କୁ ଆଗେ ସାହାଯ୍ୟ ଦବା । ବୀରବଲ

କହିଲେ, ଛାମୁ, ଆପଣଙ୍କ ରାଜ୍ୟରେ ଅଧିକାଂଶ ଅନ୍ଧ । ସାହାଯ୍ୟ କରି ବସିଲେ ଟ୍ରେଜେରୀ ଖାଲି ହେଇଯିବ । ଏମିତି କଥାରେ ଗଷି ହେଲେ ବାଜ ଛିଣ୍ଡେଇ ମରିବେ । ଆକବର ଚିଡ଼ିବାରେ ବିଚିତ୍ର କ'ଣ ? ଆକବର କହିଲେ, ବୀରବଲ୍ଲ, ସବୁ କଥାରେ ତମର ମସ୍କରା । ତମେ ଯଦି ନିଜ କଥା ତିନି ଦିନ ଭିତରେ ପ୍ରମାଣ ନକରି ପାରିବ ତେବେ ତମର ମୁଣ୍ଡ ରହିବ ନାହିଁ । ଚାରିଆଡ଼େ ହାହାକାର ପଡ଼ିଗଲା । ହେଲେ ବୀରବଲଙ୍କର ପରୁଆ ନାହିଁ । ତା ପରଦିନ ଦେଖାଗଲା, ବୀରବଲ ରଜାଙ୍କ ଯିବା ବାଟରେ ବଜାର୍ ମଝିରେ ବସି ଜାଲ ବୁଣୁଛନ୍ତି । ତାଙ୍କ ପାଖରେ ଖାତା ପେନ୍‌ସିଲ୍ ଧରି ଜଣେ ବସିଛି । ବୀରବଲ ମଝିରେ ମଝିରେ ଗୋଟିଏ ଗୋଟିଏ ସଂଖ୍ୟା ଡାକୁଛନ୍ତି । ସିଏ ଲେଖୁଚି । ଯିଏ ଯାଉଚି, ପଚାରୁଛି, ବୀରବଲ କ'ଣ କରୁଚ ? ବୀରବଲ କହିଲେ, ଏକହଜାର ପଚିଶ । ଆକବର ଭାବିଲେ ଡରରେ ବୀରବଲଙ୍କ ମୁଣ୍ଡ ବିଗିଡ଼ି ଯାଇଚି । ସିଏ ଲେଖୁଥିବା ଲୋକକୁ ପଚାରିଲେ, ଇଏ କ'ଣ । ସେ ଲୋକ କହିଲା, ଆଜ୍ଞା, ଏଇଟା ଅନ୍ଧ ତାଲିକା । ଆଜି ବୀରବଲ ଏକହଜାର ପଚିଶ ଅନ୍ଧଙ୍କ ନାଁ ତାଲିକା କରିଛନ୍ତି । ଆକବର ଦେଖିଲେ ଶେଷ ନାଁ ତାଙ୍କର । ତାଙ୍କ ରାଗ ଚଢ଼ିଗଲା । ବୀରବଲ, ଇଏ କି କଥା ? ଆଜ୍ଞା, ଦିନ ଦିପହରେ ବଜାର ମଝିରେ ମୁଁ ଜାଲ ବୁଣୁଥିବାର ଦେଖି ଯୋଉମାନେ ପଚାରୁଛନ୍ତି 'ବୀରବଲ କ'ଣ କରୁଚ ?' ସେମାନଙ୍କୁ ଅନ୍ଧ ନ କହି କଣ କୁହାଯିବ ? ଆକବର ଏତେବେଳେ ବୀରବଲଙ୍କ କଥାର ମର୍ମ ବୁଝିଲେ ।

ଆମ ସମାଜରେ ଆଜି ପାଠ ଯେତେ ବଢୁଚି ପାଠୁଆ ଅନ୍ଧଙ୍କ ସଂଖ୍ୟା ସେତିକି ବଢୁଚି । ଆପଣା ସମାଜର ସବୁ ଚଳଣିକୁ କୁସଂସ୍କାର କହି ପୋପାଡି ଦେଇ ଏମାନେ ଅନ୍ଧ ଭାବରେ ଯେଉଁ ନୂଆ ସଂସ୍କାର ଆମଦାନୀ କରୁଛନ୍ତି, ସେମାନଙ୍କ ଆଖିରେ ଆଙ୍ଗୁଠି ଗେଞ୍ଜି ଯା ଦେଖେଇବାକୁ ବୀରବଲ କାହିଁ ? ପଞ୍ଚତନ୍ତ୍ରରେ କୁହାଯାଇଚି, ଶାସ୍ତ୍ର ସଭିଙ୍କର ଆଖି, ଯାହାର ଶାସ୍ତ୍ରଜ୍ଞାନ ନାହିଁ ସିଏ ଅନ୍ଧ । ଯୋଉ ଶାସ୍ତ୍ର ମଣିଷକୁ ଅନ୍ଧ କରେ ତାକୁ ପୂଜାକଲେ କିଏ ପିଠିରେ ପଡ଼ିବ ? କଥାରେ ଅଛି, ଆପଣା ହସ୍ତେ ଜିହ୍ୱା ଛେଦି, କେ ତାର ଅଛି ପ୍ରତିବାଦୀ ?



# ଆବୁ ପର୍ବତରୁ ପଦେ

ଗୁରୁ ନାନକ ଧର୍ମ ଉପଦେଶ ଦେଉଥାନ୍ତି । କପୂରତଳା ମହାରାଜ ଏକ ହଜାର ସୁନା ଅସରପିର ଥଳୀ ଗୁରୁଙ୍କ ପାଦପାଖରେ ରଖି ପ୍ରଣାମ କଲେ । ଗୁରୁଦେବ, ମୋର ଏଇ ସାନ ଭେଟି ଗ୍ରହଣ କରନ୍ତୁ । ଗୁରୁ ଆଡ଼ ଆଖିରେ ଚାହିଁ ତାଙ୍କୁ ପାଖକୁ ଡାକି କାନରେ କହିଲେ, ମୁଁ ଗରୀବଠାରୁ ଦାନ ଗ୍ରହଣ କରେ ନାହିଁ । ମହାରାଜା ବିଚାରିଲେ ସମ୍ଭବତଃ

ଗୁରୁ ତାଙ୍କୁ ଚିହ୍ନି ପାରିଲେ ନାହିଁ । ସେ କହିଲେ ଗୁରୁଜୀ, ମୁଁ କପୂରଚନ୍ଦ୍ର ମହାରାଜା । ଗୁରୁ କହିଲେ, ସେଇଥିପାଇଁ ତ କହିଲି । ମହାରାଜା ଏଥର ସତକୁ ସତ ଅଡୁଆରେ ପଡ଼ିଲେ । ପଚାରିଲେ, ଗୁରୁଜୀ, ଗରୀବର ସଂଜ୍ଞା କଣ ? ଗୁରୁ ଟିକିଏ ମୁରୁକି ହସି କହିଲେ, ଯାହାର ତୃଷ୍ଣା ଅପାର ସେଇ ଗରୀବ । ହଜାରକୁ ପାଞ୍ଚ ହଜାର କରିବା ତୃଷ୍ଣା ତାକୁ ଗରୀବ କରେ । ଅପର ପକ୍ଷରେ ଯାହାର ପଇସା ଅଛି ସେ ଧନୀ ନୁହେଁ । ଯାହାର ତୃଷ୍ଣା ସଂପୂର୍ଣ୍ଣ ସମାପ୍ତ ହୋଇ ଯାଇଛି ସେହି ଧନୀ ।

ଆଜି ସଂସାରରେ ଧନର ପରିମାପରେ ଧନୀ ଗରୀବ ମପା ଯାଉଚି । ମନର ପରିମାପରେ ନୁହେଁ । ଆଜିର ମଣିଷ କାମ ଛାଡ଼ିବାକୁ ରାଜି, କାମନା ଛାଡ଼ିବାକୁ ନୁହେଁ । ତେଣୁ ସଂସାରରେ ଅଳସ ମନର ଭୂତଖାନାରେ ହିଂସା, ଦ୍ୱେଷ, ଲୋଭ ମୋହର କାରଖାନା ବସିଚି । ବାସ ନ ଥାଉ ପଛେ ବାସନା ପଛରେ ଗୋଡେଇ ଗୋଡେଇ ମଣିଷ ଆଜି ଏକ ଅମୁହାଁ ଗଳିରେ ପହଞ୍ଚିଛି ।

ମଣିଷର ଏଇ ଅସହାୟ ପଣିଆର ସୁବିଧା ନେଇ ଆଜି ନୂଆ ନୂଆ ଧର୍ମ ସୃଷ୍ଟି ହେଉଛି । ଯୋଗ ଶିଖେଇ ମନକୁ ଶାନ୍ତି ଦେବାକୁ ନୂଆ ନୂଆ ପନ୍ଥାର ସୃଷ୍ଟି ହେଉଚି । ଧର୍ମ ଯଦି ଧରି ରଖିବାର ସୂତ୍ର, ଯୋଗର ଲକ୍ଷ ଯଦି ଯୋଡ଼ିବା ତେବେ ଠାକୁରଙ୍କୁ ଧରି ରଖିବା ଆଗରୁ ମଣିଷକୁ ଧରିରଖିବା ପ୍ରାଧାନ୍ୟ ପାଇବା ଉଚିତ୍ ନୁହେଁ କି ? ଆତ୍ମାକୁ ପରମାତ୍ମା ସାଙ୍ଗରେ ଯୋଡ଼ିବା ଆଗରୁ ଆତ୍ମାକୁ ଆତ୍ମା ସାଙ୍ଗରେ ଯୋଡ଼ିବା ଅଧିକ ସଂଗତ ନୁହେଁ କି ? ଯେଉଁଠି ମଣିଷ ମଣିଷ ଭିତରେ ଯୋଗ ନାହିଁ, ମଣିଷ ସମାଜକୁ ଧରିରଖିବା ସୂତ୍ର ହଜି ଯାଇଛି, ସେଠି ଆଧ୍ୟାତ୍ମିକ ନାଁରେ ସଂସାର ଛାଡ଼ିବାକୁ ପ୍ରବର୍ତ୍ତେଇବା ଏକ କ୍ରୁର ପରିହାସ । ଆତ୍ମିକ ଯୋଗ ଯେ ଅଧ୍ୟାତ୍ମ ଯୋଗର ପ୍ରଥମ ସୋପାନ, ଏକଥା ଭୁଲିଲେ 'ଅତୋ ନଷ୍ଟ ତତୋ ନଷ୍ଟ' ।

ଆଜିର ଯନ୍ତ୍ରସଭ୍ୟତା ଗୋଟିଏ ଅର୍ଥରେ ଦୂରକୁ ନିକଟ କରିଚି । କିନ୍ତୁ ଆପଣାକୁ ପର କରିଛି ଆଉ ପଡ଼ିଶାକୁ ବିଦେଶୀ କରିଛି । ବିଲାତର ପ୍ରଧାନମନ୍ତ୍ରୀଙ୍କ ଘର ନମ୍ବର ଆମକୁ ଜଣା, ବାପୁଜୀଙ୍କ ଜନ୍ମ ଜାଗାର ଠିକଣା ଜଣାନାହିଁ । ପୃଥିବୀର ଅର୍ଥନୀତି ବିଷୟରେ ଆମେ ଯେତେ ଜାଣୁଚୁ ଆପଣା ଗାଁ ବା ବସ୍ତିର ଅର୍ଥନୀତି ବିଷୟରେ ତାର ଜାଣିଚାଏ ଜ୍ଞାନ ଆମର ନାହିଁ । ବମ୍ବେରେ ଯେଉଁ ଲୋକେ ଟି.ଭି. କ୍ୱିଜ ପଢ଼ି ଦେଶବିଦେଶ ବିଷୟରେ ସାଧାରଣ ଜ୍ଞାନ ସଂଗ୍ରହ କରିବାରେ ବ୍ୟସ୍ତ, ତାଙ୍କ ପଡ଼ିଶା ଘରେ କିଏ ରହୁଚି ତାଙ୍କୁ ଜଣା ନାହିଁ । କଦବା କ୍ୱଚିତ୍ ସିଢ଼ିରେ କିମ୍ବା ଲିଫଟ୍‌ରେ ଭେଟ ହୋଇଗଲେ ଅଜଣା ପରି ଅନ୍ୟ କାମରେ ମନ ଦେବାର ଛଳନା କରିବା ମୁଁ କେତେ ଥର ନିଜ ଆଖିରେ ଦେଖିଚି ।

ଆଗେ ମଣିଷର ଗୋଟାଏ ପରିଚୟ ଥିଲା । ଆମ ପରିଚୟ ମଧ୍ୟ ଯୁଗର— ଏକଥା

କହି ଲୋକେ ହସିବାରୁ ନାଁରୁ ଜାତି ଗନ୍ଧ ଛଡ଼େଇବାକୁ ଲାଞ୍ଚ କରା ହେଲା । ଆପଣଙ୍କ ନାଁ କ'ଣ ? ରବୀନ୍ଦ୍ର । ରବୀନ୍ଦ୍ର କଣ ? ଖାଲି ରବୀନ୍ଦ୍ର । ଏଇ ଖାଲି ରବୀନ୍ଦ୍ରଙ୍କ ବିରୁଦ୍ଧରେ ଅଭିଯୋଗ ଯେ ସେ ଆପଣା ଜାତି ପ୍ରତି ଟିକିଏ ଅଧିକ ଝୁଙ୍କନ୍ତି । ଜାତି ଗଲା, ପେଟ ବି ପୂରିଲା । ଆଧୁନିକତା ଖାତାରେ ନାଁ ଲେଖା ହେଲା ଅଥଚ ଯାହା ଏଡ଼ିବା ପାଇଁ ଏ ସବୁ କରା ହେଲା ତା ଅଧିକ ଗଣ ହେଲା । ଏଇ ପରି ଛଳ ଆଧୁନିକତା ପାଇଁ ମଣିଷ ଚରିତ୍ର ହରେଇ ଦୋମୁହାଁ ହୋଇଯାଇଛି । ଆଗେ ପରିବାରର ବି ନାଁ ଥିଲା । ଆମ ଗାଁ ନିଧି ସାହୁ ଗୁଡ଼ିଆଙ୍କୁ ସବୁ ପଞ୍ଚାୟତକୁ ଡ଼କା ପଡୁଥିଲା । ତାଙ୍କ ଘରର କେହି ପିଲା ଦୁଷ୍ଟାମୀ କଲେ କିଏ ଯଦି କହିଦେଲା, କିରେ କାହାଘର ପିଲା ତୁ, ଏମିତି କଣ ହେଉଚୁ ? ବାସ, ସେଇ ଯଥେଷ୍ଟ । ମାଡ଼ଠାରୁ ବଳିଗଲା । ଆଜି ଘରର ମର୍ଯ୍ୟାଦା ପଇସାରେ ମପା ହେଲାବେଳକୁ ସେମାନଙ୍କ ଘର ପିଲାଏ ଯେ ବେମୁରବିଆ ବ୍ୟବହାର କରିବେ ଏଇଟା ତ ଜଣା କଥା । ତେବେ ଆପତ୍ତି କୋଉଠି କି ?

ଯା ସାଙ୍ଗକୁ ଧର୍ମ ଶିଖୋଉଥିବା ଲୋକଙ୍କ କଥା ଦେଖ । ଆଠ ବର୍ଷର ଝିଅଟିଏ ଏମିତି ଗୋଟିଏ ଧର୍ମ ଗୋଷ୍ଠୀରେ ପଢୁଚି । କିଲୋ ଝିଅ ତୋ ନାଁ କଣ ? ମୋର ଲୌକିକ ନାଁ କୁସୁମ । ଲୌକିକ ଘର ଦ୍ୱାର ଜାତି ପତି ଅଛି ନା ନାହିଁ ? 'ଏ ସବୁ ଜାଣି ଦରକାର କଣ ? ପରମାତ୍ମାଙ୍କୁ ଜାଣିଲେ ଯଥେଷ୍ଟ' । ଯା ପରେ କଥା ଅଚଳ ।

ଆମ ପିଲାଦିନେ ସ୍ୱାଧୀନତା ଆନ୍ଦୋଳନ ଥିଲା । ଦେଶ ପାଇଁ କାମ କରିବା ଆଦର୍ଶ ଆଖି ଆଗରେ ଥିଲା । ଆଜିକା ପିଲାଙ୍କ ଅନୁଭବରେ ତା ନାହିଁ । ଆନ୍ତର୍ଜାତିକତା ଆଉ ସ୍ଥାନୀୟତାର ଟଣାଟଣି ଭିତରେ ଦେଶ କୋଉଠି ହଜିଗଲାଣି । ଜାତି ପ୍ରଥା ହାନିକର, ମଧ୍ୟଯୁଗୀୟ ଲାଜ କହିଲା ପରେ ଜାତି ପରିଚୟ ଦେବା କଠିନ । ଯୁକ୍ତ ପରିବାର ଭାଙ୍ଗିଯାଇଚି । ଏମିତି କି ଏକକ ପରିବାରର ମଧ୍ୟ ଜୀବନ ସଂକଟ । ଏଥିରେ ପଶ୍ଚିମର ଜୀବନଧାରା ସାଙ୍ଗରେ ପଶ୍ଚିମୀ ମାନସିକତା ଓ ମାନସିକ ରୋଗ ଆସିବା ସ୍ୱାଭାବିକ୍ । ପିଲାଦିନେ ମୋ ଜେଜେବାପା ଜେଜେମା ମାଳି ଜପିବାର ଦେଖିଚି । ଜପ ସବୁ ଭାରତୀୟଙ୍କ ଜୀବନ କ୍ରିୟାର ଅଂଗ ଥିଲା । ସେଥିରେ ଖାଲି ଯେ, ଏକାଗ୍ରତା ଆସୁଥିଲା, ନୁହେଁ । ମାନସିକ ଶାନ୍ତି ଉପୁଜୁଥିଲା । ତାକୁ ମରହଟିଆ କହି ବାଦ ଦେଇ ପୁଣି ଆନୁଷ୍ଠାନିକ ଶାନ୍ତି ପାଇଁ ଯେଉଁ ପ୍ରଚାର ଚାଲିଛି ତାର ପରିଣତି କଣ ?

ଆଜିକାଲି ନୂଆ ଶିକ୍ଷାନୀତି ବିଚାର ଚାଲିଥିଲା ବେଳେ କେହି କେହି ନୈତିକତା ଶିକ୍ଷା କିମ୍ବା ଶାନ୍ତି ଶିକ୍ଷା ଉପରେ ଜୋର ଦେଲାବେଳେ କେହିବା ସଂହତି ଶିକ୍ଷା କଥା କହୁଛନ୍ତି । ଏପରି କହିବା ଏକ ପ୍ରକାର ଔପଚାରିକ ହୋଇଗଲାଣି । କଥା ହେଉଛି ଯଦି ସମସ୍ତ ଶିକ୍ଷାବ୍ୟବସ୍ଥା ଅନୀତି ଓ ହିଂସା ଦ୍ୱେଷ ସୃଷ୍ଟିକରେ କିମ୍ବା ସଂହତିର ବାଧକ ମନୋବୃତ୍ତି

ପୃଷ୍ଠିକରେ ତେବେ କେତେ ଘଣ୍ଟା ଶାନ୍ତି, ସଂହତି କିମ୍ବା ନୀତିଶିକ୍ଷା ଦେଇ କଣ ଶିକ୍ଷାକୁ ସୁଧାରି ହେବ ? ଶିକ୍ଷା ହିଁ ହେଉଛି ଜୀବନ । ବିଦ୍ୟା ଶବ୍ଦର ଅର୍ଥ ଦୁଇଟି । ଗୋଟିଏ ଅର୍ଥରେ ବିଦ୍ୱାନ୍ ଶବ୍ଦର ଉତ୍ପତ୍ତି । ଅନ୍ୟ ଅର୍ଥରେ ବିଦ୍ୟତେ ଶବ୍ଦର ଉତ୍ପତ୍ତି । ତେଣୁ ବିଦ୍ୟାହିଁ ଜୀବନ । ଜୀବନ ଅର୍ଥ ଶିକ୍ଷା ଏହାହିଁ ତ ଆମର ଗୃହୀତ ନୀତି । ତେବେ ଅସୁବିଧା କେଉଁଠି ? ଅସୁବିଧା ହେଉଛି, ଧର୍ମ, ଦର୍ଶନର ଅଭାବ ଏ ଦେଶରେ ନାହିଁ । ଖାଲି ଯାହା ପତାକା ଧରିବା ପାଇଁ ଯୋଗ୍ୟ ଲୋକର ଅଭାବ । ଆଜି ମଣିଷ ତିଆରି ହିଁ ଭାରତର ପ୍ରମୁଖ ସମସ୍ୟା । ଏଥିପାଇଁ ସକ୍ରିୟ ଚେଷ୍ଟା ନ କରାଗଲେ ଭବିଷ୍ୟତ ଅନିଶ୍ଚିତ ।



# ଏ ଦେଶ ଅମଲାଙ୍କର, ଏ ଦେଶ ବୁଢ଼ାଙ୍କର

ମତେ ଜଣେ ଦିଲ୍ଲୀରେ ପଚାରିଲେ, ମହୀଶୂର ଖବର କଣ ? ମୁଁ କହିଲି ଯେତେଦିନ ଯାଏ ବିପ୍ଳବ ଦିଲ୍ଲୀରେ ସୀମିତ ଆମେ ମହୀଶୂରରେ ନିରାପଦ । ଭଦ୍ରଲୋକ ଚମକି ଉଠିଲେ । କହିଲେ ଏ କଥା ଏ ଯାଏ ମୋ ମନକୁ ଆସି ନ ଥିଲା । ତମେ କଣ କହୁଛ ଦିଲ୍ଲୀର ବିପ୍ଳବ ମହୀଶୂରରେ ପହଞ୍ଚୁନାହିଁ ? ମୁଁ କହିଲି, ପହଞ୍ଚୁନାହିଁ କାହିଁକି । ଦିଲ୍ଲୀର ସରକାରୀ ବିପ୍ଳବ ସବୁ ରାଜ୍ୟର ରାଜଧାନୀରେ ଆଉ ବଡ଼ ସହରରେ ଚାଞ୍ଚଲ୍ୟ ସୃଷ୍ଟି କରୁଛି ନିଶ୍ଚୟ । ତେବେ ସାଢ଼େ ପାଞ୍ଚଲକ୍ଷ ଗାଁରେ ଥିବା ଲୋକଜୀବନରେ ଯାର ପ୍ରଭାବ ନାହିଁ କହିଲେ ଚଳେ ।

ପ୍ରଭାବ ନାହିଁ କହିଲେ ଠିକ୍ ହେବନାହିଁ । ଗାଁ ଭିତରେ ଟେଲିଭିଜନ୍ ପଶିଲାଣି । ଭି.ସି.ଆର.ବି କେହି କେହି କଦବା କ୍ୱଚିତ୍ କିଣୁଛନ୍ତି । ତେବେ ତା ଇଂରାଜୀ ବା ହିନ୍ଦୀ ସିନେମା ଦେଖିବାକୁ । ଭାଷା ନ ବୁଝନ୍ତୁ ପଛକେ ଗୀତ ନାଚ ଦେଇ ସପନ ରାଇଜ ତିଆରି କରିବାରେ ଟେଲିଭିଜନ୍‌ର ଯୋଡ଼ି ନାହିଁ । ଗାଁରେ ଏବେ ମନୋରଞ୍ଜନର ସବୁ ବାଟ ବନ୍ଦ ହୋଇଯାଇଛି । ତହିଁରେ ପୁଣି ନିଜକୁ ଆଧୁନିକ କହି ନିଜ କ୍ଷମତା ଜାହିର କରିବା ପାଇଁ ଏଇ ସବୁ ଯନ୍ତ୍ରପାତି ଠାରୁ ବଡ଼ ସାଧନ ନାହିଁ । କୋଉ ଗାଁର ଜଣେ ମାତବର ଲୋକ ଟେଲିଭିଜନ୍ ଜରିଆରେ ପ୍ରଧାନମନ୍ତ୍ରୀଙ୍କ ସାଙ୍ଗରେ କଥାବାର୍ତ୍ତା ହୁଅନ୍ତି ବୋଲି ଗାଁରେ ବଢ଼େଇ କରିବାର ଶୁଣାଅଛି ।

ଏବେ ଗାଁ ସ୍କୁଲକୁ କମ୍ପ୍ୟୁଟର ଗଲାଣି । ଦଶଦିନ ଟ୍ରେନିଂ ନେଉଥିବା ଜଣେ ମାଷ୍ଟରଙ୍କୁ ମୁଁ ପଚାରିଲି, ତାଙ୍କ ସ୍କୁଲକୁ କମ୍ପ୍ୟୁଟର ଆସିବାରେ ତାଙ୍କର ପ୍ରତିକ୍ରିୟା କଣ ? ମାଷ୍ଟ୍ରେ କହିଲେ, ମୁଁ ଏକଥା କାହାକୁ କହିନି । ଆପଣଙ୍କୁ କହୁଚି । କମ୍ପ୍ୟୁଟର ଆସିବାର ତିନିଦିନ ଯାଏ ମୁଁ ଶୋଇନାହିଁ । କିଛି ଆନନ୍ଦ, କିଛି ଆଶଙ୍କା, କିଛି ପରିମାଣରେ ଆତଙ୍କ ସବୁ ମିଶି ନିଦ ଆଉ ଆସିଲାନି । କମ୍ପ୍ୟୁଟର୍‌ରେ ଚନ୍ଦନ ସିନ୍ଦୁର ଲଗା ହେଲା, ଫୁଲ ଚଢ଼ା ହେଲା । ତା

ଆଗରେ ନଡ଼ିଆ ଭଙ୍ଗା ହେଲା, ଧୂପ ଝୁଣା ଦିଆଗଲା । ଇଏତ ଏ ଯୁଗର ଦେବତା । ମୁଁ ମାଷ୍ଟ୍ରଙ୍କ କଥାର ସୁଅ ବଦଳେଇ ପଚାରିଲି, କିଏ ଏ ଯନ୍ତ୍ର ବ୍ୟବହାର କରୁଚି ? ମାଷ୍ଟ୍ରେ କହିଲେ ଆମ ଗାଁରେ ଇଲେକ୍ଟ୍ରି ନାଇଁ । ଆସିବ ଆସିବ ବୋଲି ଚାରିମାସ ଗଲାଣି । ସେ ଦିନ ଜଣେ ବାବୁ ପଚାରାପଚରି କରିବାକୁ ଆସିଥିଲେ । ମୁଁ ସଫା କହିଦେଇଚି, କମ୍ପ୍ୟୁଟର୍ ଡବାରେ ବନ୍ଦ ହୋଇ ଥୁଆ ହୋଇଛନ୍ତି । କମ୍ପ୍ୟୁଟର ପିଲାଙ୍କୁ ବାସନ୍ଦ । କୁଆଡ଼େ ଭାଙ୍ଗିଭୁଙ୍ଗି ଯିବ । ଶେଷକୁ ଏଇ ଗରୀବ ମାଷ୍ଟ୍ର ଉପରେ ମାଡ଼ ପଡ଼ିବ । ଗରୀବ ମାଷ୍ଟ୍ରତ ସମସ୍ତଙ୍କ ଶାଳା । ଶେଷକୁ ଦରମା କାଟ । ହସିବି କି କାନ୍ଦିବି ?

ଦେଶରୁ ପାରମ୍ପରିକତା ହଟେଇ ବୈଜ୍ଞାନିକତା କେମିତି ଆମଦାନୀ କରାଯିବ ସେଥିପାଇଁ ହୁରିଛୁରି ପଡ଼ିଚି । ୨୧ଶ ଶତାବ୍ଦୀକି ଯିବାକୁ ସମସ୍ତେ ଅଣ୍ଟା ଭିଡୁଛନ୍ତି । ଗାଁର ଜଣେ ମୁଣ୍ଡ କହିଲେ, ବୁଝିଲ ପିଲାଏ, ହିମାଳୟ ଯିବାକୁ ହେଲେ ହୁଏତ ଆପଣା ଗୋଡ଼ରେ ବଳ ଥିଲେ ଯିବ, ନୋହିଲେ ମାଲଭାଇଙ୍କ କାନ୍ଧରେ ବୁହା ହୋଇ ଯିବ । ଏଇ ଯୋଉ ସବୁ ନୂଆ ଯନ୍ତ୍ରପାତି ଆସୁଚି ସେଥିରେ ସହରି ବାବୁମାନଙ୍କର କିଛି ନଫା ଥିବ ଅବା । ଏ ଯନ୍ତ୍ର ଆମ ଭାଷା ବୁଝେନାଇଁ କି ଆମେ ତା ଭାଷା ବୁଝୁନାଉଁ । ଯୋଉମାନେ ମଧ୍ୟସ୍ଥ ସେମାନେବି ଆମକୁ ଆମ ଭାଷାରେ ବୁଝେଇ ପାରୁନାହାନ୍ତି । ବିଦେଶୀ ଭାଷାରେ ଏ ନୂଆ ଜ୍ଞାନ ଯିବ କୋଉଠିକି ? ଆମ ଭୂଇଁରେ ଏ ବିଜ୍ଞାନ ଚେର ଗଡ଼େଇବ କେମିତି ? ଖାଲି ଯନ୍ତ୍ର ଥୋଇଲେ ତ ହେବ ନାଇଁ । ତାକୁ ଚଳେଇବାକୁ ଯୋଉ ପାଠ ସିଏ କାଇଁ ? ଆମ ଭାଷାରେ ଯେ ପାଠ ହବ ନାଇଁ ନୁହେଁ । ଏଇ ପଠାଣି ସାଆନ୍ତଙ୍କୁ ଦେଖ । ଦିଖଣ୍ଡ କାଠିରେ ସିଏ ଆକାଶ ଆଉ ତାରା ବିଷୟରେ ଏମିତି ଗଣାଗଣି କରି ସିଦ୍ଧାନ୍ତ ଦର୍ପଣ ପୋଥି ଲେଖି ଯାଇଛନ୍ତି ଯେ, ବିଜ୍ଞାନର ବଡ଼ବଡ଼ ପଣ୍ଡିତ ଏବେ ବି ତାଙ୍କୁ ମାନ୍ୟ କରୁଛନ୍ତି । କବି ଜଣ ମିଛରେ ଲେଖିଛନ୍ତି, "ସିଦ୍ଧାନ୍ତ ଦର୍ପଣ ହେବ ନାହିଁ ଲୟ, ନର ଦେହେ ଥିବ ଯାବତ ହୃଦୟ" ?

ସମସ୍ତେ ଗୁଣୁ ଗୁଣୁ ହେଲେ । ସତରେ ତ, ଆମ ଭାଷାରେ ବିଜ୍ଞାନ ବିଷୟରେ ନୂଆ ବିଚାର କାଇଁ ? ବିନୋଦ କାନୁନଗୋ ଗହଣା ଭିତରେ ନିମକାଠି । ପାଠର ସବୁ ବିଭାଗରେ ଏତେ ନୂଆ ଜ୍ଞାନ ବାହାରୁଚି ଯେ ତାକୁ ଜ୍ଞାନର ବିସ୍ଫୋରଣ ବୋଲି କୁହାଯାଉଚି । ସମସ୍ତେ ତ କହୁଚନ୍ତି ଭବିଷ୍ୟତ ଯୌବନର । କି ପ୍ରକାର ସମାଜ ଆମେ ଆମ ପିଲାଙ୍କ ପାଇଁ ରଖି ଯାଉଚୁ ?

ଜଣେ ଯୁବକ ସେପଟ କଣକୁ ବସିଥିଲେ । କହିଲେ ଆଜ୍ଞା ଏ ଦେଶ ଅମଲାଙ୍କର । ଯିଏ ଯେତେଦିନ ନ ମଲା ତାର ଦାମ ବଢ଼ି ବଢ଼ି ଯାଉଚି । ଭାରତୀୟ ରାଜନୀତି କ୍ଷେତ୍ରରେ ଏବେବି ମୋରାରଜୀ, ଚରଣ ସିଂଙ୍କ ଭଳିଆ ଲୋକଙ୍କର କରଣୀ ଚାଲିଚି । ଶିକ୍ଷା କ୍ଷେତ୍ରରେ ଗତ ୩୦ ବର୍ଷ ଭିତରେ ଭାରତରେ ଗୋଟିଏ ବି ନୂଆମୁହଁର ଦେଖା ନାଇଁ । ଯିଏ ଚାକିରୀ କାଳ ଭିତରେ କିଛି ନ କରିପାରିଲେ ଚାକିରୀ ଗଲା ପରେ ସେମାନଙ୍କୁ ପୁଣି ନୂଆ ଜୀବନ

ଦିଆଯାଉଚି । ଏଇ ସବୁ ପାଠ ନୂଆ । ନୂଆ ବହି, ନୂଆ ପଢ଼େଇବା ପଦ୍ଧତି, ନୂଆ ଯନ୍ତ୍ରପାତି ଆସିଲା, ଅଥଚ୍ ସେଇ ପୁରୁଣା ମନ ଏ ସବୁର ହର୍ତ୍ତା, କର୍ତ୍ତା, ବିଧାତା । ଏମାନଙ୍କ ସାଂଗ ହେଉଛନ୍ତି ଶାସନକଳର ଅମଲା । ଏମାନେ ରକ୍ତବୀଜ । ଅମଲାତନ୍ତ୍ରର ମରଣ ନାହିଁ । ଏମାନେ ସବୁ ବିଦ୍ୟାରେ ପ୍ରବୀଣ ପୁଣି ଆପଣା ସ୍ୱାର୍ଥୀ । ଦୁଇ ପ୍ରକାର ଅମଲାଙ୍କ ମେଳ ବିଶ୍ୱବିଦ୍ୟାଳୟମାନଙ୍କରେ ଦେଖିବାକୁ ମିଳେ । ଯଦି ଟିକିଏ କିଛି ଗୋଳମାଳ ହେଲା, ଅମଲାଙ୍କୁ ବସେଇ ଦିଅ । ଅମଲାଙ୍କ ବିରୁଦ୍ଧରେ ମୋର କିଛି କହିବାର ନାହିଁ । ଅନେକେ ମୋର ବନ୍ଧୁ । ଗୋଟିଏ ଦୃଷ୍ଟିରୁ ମୁଁ ବି ଜଣେ ଅମଲା । ଏଠି ବ୍ୟକ୍ତି କଥା ପଡ଼ିନାଇଁ, ତନ୍ତ୍ର କଥା ପଡ଼ିଚି ।

ଆଜିର ସମାଜ ବୁଢ଼ାଙ୍କର ସମାଜ । ପିଲାଙ୍କ ନାଁରେ ଢ଼କା ପଡ଼ିଛି । କିନ୍ତୁ ସେଇ ପିଲାଏ ବୁଢ଼ା ନୋହିଲା ଯାଏ ତାଙ୍କ ହାତକୁ ମନଲାଖି ସୁଯୋଗ ଆସୁନାଇଁ । ବୁଢ଼ା ହୋଇ ଅପାରଗ ପଣିଆର ନମୁନା ଜାହିର କଲେ ଯାଇ ଦାୟିତ୍ୱ ମିଳିବ— ଏଇ ପ୍ରତ୍ୟୟ ପିଲାଙ୍କର ହେଇଗଲାଣି । ସେଥିପାଇଁ ସେମାନେ ହୁଏତ ଭଙ୍ଗାରୁଜା କାମରେ ମନ ଦେଉଛନ୍ତି, ନୋହିଲେ ଗଞ୍ଜା, ଭାଙ୍ଗ, ଚରସରେ ।

ପୁନାରେ ଜଣେ ପୁରୁଣା ବନ୍ଧୁଙ୍କ ସାଙ୍ଗରେ ଭେଟ ହେଲା । ସିଏ କହିଲେ ଆଉ ମାତ୍ର ଦିଟା ବର୍ଷ ବାକି ଅଛି । ଅଠଷଠି ପୂରିଲା । ଏବକାର ନିୟମ ଅନୁସାରେ ୬୫ ପୂରିଲେ ବର୍ଷ ବର୍ଷ ହୋଇ ସତୁରିରେ ଶେଷ । କଣ କରିବି ଭାବୁଚି । ଆମର ପୁରୁଣା ସମାଜରେ ଚାରି ଆଶ୍ରମର ବ୍ୟବସ୍ଥା ଥିଲା । ଗୋଟାଏ ବୟସରେ ଲୋକେ ସଂସାରରୁ ଆପଣାକୁ ଆଡ଼େଇ ନେଉଥିଲେ । ସାରା ଜୀବନ ସେଥିପାଇଁ ପ୍ରସ୍ତୁତି ଚାଲିଥିଲା । ତାକୁ ପୁରୁଣା କହି ଓଳେଇ ଫୋପାଡ଼ି ଦେଲାପରେ କୌଣସି ଅନ୍ୟ ବ୍ୟବସ୍ଥା ଆମେ ତିଆରି କରିନାହୁଁ । ତେଣୁ ଏଇ ପିଲା ବୁଢ଼ା ବିବାଦ, ଅବସର ନେଇ ସାରିଲା ପରେ ସେଇ ଅବସର କଟେଇବା ପାଇଁ ନା ବ୍ୟକ୍ତିଗତ ନା ସାମାଜିକ ଚିନ୍ତନର କୌଣସି ସୂଚନା ଦେଖା ଯାଉଚି ।

ପୁରୁଣା ବୁଢ଼ାଙ୍କ ପରାମର୍ଶ ଆଉ ଏ କାଳ ବୁଢ଼ା ଆଉ ଅମଲାଙ୍କ ପରାମର୍ଶ ଭିତରେ ଫରକ ଅଛି । ଗୋଟିଏ ହାତୀ ଖାଇବାକୁ ନ ପାଇ ପରାମର୍ଶ ଖୋଜି ବୁଲିଲା । ରଜା ତ ଗଲେଣି । ଏବେ ଅମଲା ରଜା । ହାତୀ ପଚାରିଲା ମୁଁ କଣ କରିବି ? ଏତେ ବଡ଼ ଦିହ, ଏତେ ଖାଇବା ଯୋଗେଇବି କୋଉଠୁ ? ଅମଲା ଆଉ ତାଙ୍କ ବୁଢ଼ା ପରାମର୍ଶଦାତା ବିଚାର କରି କହିଲେ, ତମେ ମୂଷା ହୋଇଯା । ଦିହ କମିଯିବ, ଆଉ ସେଇ ଅନୁପାତରେ ଖାଇବ । ହାତୀ ପଚାରଲା ମୂଷା ହେବି କେମିତି ? ଉତ୍ତର ମିଳିଲା, ଏଇଟା କାର୍ଯ୍ୟକାରୀ କରିବାର ସମସ୍ୟା । ଆମେ ସମସ୍ୟା ବିଚାର କରି ବୁଦ୍ଧି ବତେଇଲୁ । ଏଣିକି କାର୍ଯ୍ୟକାରୀ କରିବା ତମ ଦାୟିତ୍ୱ ।



# ଧର୍ମ ଓ ହିନ୍ଦୁଧର୍ମ

ବସ୍ତୁର ଗୁଣ ହେଉଛି ତାର ଧର୍ମ । ସୁଗନ୍ଧ ଫୁଲର ଧର୍ମ । ଶୀତଳତା ଚନ୍ଦ୍ର କିରଣର ଧର୍ମ । କଠିନତା ପଥରର ଧର୍ମ । ଏଇ ଦୃଷ୍ଟିରୁ ଦେଖିଲେ ଦୟା, କ୍ଷମା, ସ୍ନେହ, ପ୍ରେମ, ଭ୍ରାତୃତ୍ୱ, ସୌହାର୍ଦ୍ଦ୍ୟ ସେଇ ମଣିଷର ଧର୍ମ । ହିଂସା, ଦ୍ୱେଷ, ରାଗରୋଷ ଆଦି ଅଗୁଣ ଆଉ ସଂକୀର୍ଣ୍ଣତା ହୀନମନ୍ୟତା ଆଦି ଦୁର୍ଗୁଣ ହୋଇଥିବାରୁ ଏହା ମଣିଷର ଧର୍ମ ନୁହେଁ ।

କେହି କେହି ଈଶ୍ୱରବିଶ୍ୱାସୀଙ୍କୁ ଆସ୍ତିକ ଓ ଈଶ୍ୱର ଅବିଶ୍ୱାସୀଙ୍କୁ ନାସ୍ତିକ ବୋଲି ମାନନ୍ତି । ଏହି ଆସ୍ତିକ ଓ ନାସ୍ତିକର ପ୍ରତି ଶବ୍ଦ ଧାର୍ମିକ ଓ ଅଧାର୍ମିକ ବୋଲି ସେମାନେ ମାନିଥାନ୍ତି । ଏହା କିନ୍ତୁ ଠିକ୍ ନୁହେଁ । ଆମ ପରମ୍ପରାରେ ଈଶ୍ୱର ବିଶ୍ୱାସୀ ନୁହେଁ, ବେଦ ବିଶ୍ୱାସୀ ଆସ୍ତିକ ଓ ବେଦ ଅବିଶ୍ୱାସୀ ନାସ୍ତିକ । ବେଦ କେବଳ ପୋଥି ନୁହେଁ । ବେଦ ହେଉଚି ଜ୍ଞାନ । ତେଣୁ ଜ୍ଞାନରେ ବିଶ୍ୱାସୀ ଆସ୍ତିକ ଓ ଧାର୍ମିକ । ଜ୍ଞାନରେ ଅବିଶ୍ୱାସୀ ନାସ୍ତିକ ଓ ଅଧାର୍ମିକ । ଯେଉଁମାନେ ଜ୍ଞାନ ବଦଳରେ କର୍ମକାଣ୍ଡ, ଗାହାଣୀ ବଦଳରେ ଚ଼କଣି ଉପରେ ବିଶ୍ୱାସ କରନ୍ତି ସେମାନଙ୍କୁ ଧାର୍ମିକ କହିବାକୁ ମନ ନ ଟେକିବା ସ୍ୱାଭାବିକ ।

ଆମ ଗାଁ ଗଣ୍ଡାରେ, 'ଭୋକିଲାକୁ ଖାଇବାକୁ ଦେବା ଧର୍ମ', 'ଶୋଷିଲାକୁ ପିଇବାକୁ ଦେବା ଧର୍ମ' ପରି କଥା ଶୁଣିବାକୁ ମିଳେ । ଏଠି କର୍ତ୍ତବ୍ୟ ଅର୍ଥରେ ଧର୍ମର ପ୍ରୟୋଗ । ଆମ ସଂସ୍କୃତିରେ ଦାବୀ ଅପେକ୍ଷା କର୍ତ୍ତବ୍ୟର ସ୍ଥାନକୁ ଗୁରୁତ୍ୱ ଦିଆଯାଇଛି । ପିତୃଋଣ, ଗୁରୁଋଣ, ଦେବଋଣ ଆଦି ଜୀବନ ବିକାଶର ବିଭିନ୍ନ ପର୍ଯ୍ୟାୟରେ ବିଭିନ୍ନ ଦିଗରୁ ମିଳିଥିବା ଆଶୀର୍ବାଦର ସ୍ୱୀକୃତି । ସମାଜ ବନ୍ଧନର ଏଇ ଅଦେଖା ସୂତାର ଡ଼ୋର ହେଉଛି ଧର୍ମ ।

ମଣିଷର ଧର୍ମ, ଭାରତୀୟ ଧର୍ମ କଥା କହିଲାବେଳେ ହିନ୍ଦୁ ଧର୍ମ, ମୁସଲମାନ ଧର୍ମ, ବୌଦ୍ଧ ଧର୍ମ, ଖ୍ରୀଷ୍ଟିୟାନ୍ ଧର୍ମ, ଶିଖ୍ ଧର୍ମ, ଆଦି କଥା ମନକୁ ଆସେ । ଏଇ ଶବ୍ଦମାନଙ୍କରେ ଧର୍ମର ପ୍ରୟୋଗ ଓ ଖ୍ରୀଷ୍ଟିୟାନ୍ ପୂର୍ବ ଭାରତରେ ହିନ୍ଦୁ ଓ ହିନ୍ଦୀ ବା ହିନ୍ଦୁସ୍ଥାନୀ ଏକ ଅର୍ଥରେ ବ୍ୟବହାର କରାଯାଉଥିଲା । ଏହା ହିନ୍ଦୁ, ଆର୍ଯ୍ୟ, ଦ୍ରାବିଡ଼, ମୁଣ୍ଡା ଜାତିର ସମ୍ମିଶ୍ରଣ ନୁହେଁ । ପୃଥିବୀର ବିଭିନ୍ନ ପ୍ରାନ୍ତରୁ ବିଭିନ୍ନ ଜନ ସମୁଦାୟ ଆସିଥିବା ଲୋକଧାରାର ମଧ୍ୟ ସମ୍ମିଶ୍ରଣ ଥିଲା । ମୁସଲମାନ ଆସିଲା ପରେ ମୁସଲମାନ ଇତର ଲୋକଙ୍କୁ ହିନ୍ଦୁ କୁହାଗଲା । ଖ୍ରୀଷ୍ଟିଆନ୍ ଆସିଲା ପରେ ହିନ୍ଦୁ ଶବ୍ଦର ଅର୍ଥ ସଂକୋଚନ ହୋଇ ମୁସଲମାନ ଓ ଖ୍ରୀଷ୍ଟିଆନ୍ ଇତର ଲୋକଙ୍କୁ ହିନ୍ଦୁ କୁହାଗଲା ।

ହିନ୍ଦୁମାନଙ୍କ ଭିତରେ ଚାରିବର୍ଣ୍ଣରୁ ଚାରିହଜାର ଜାତି ଓ ଚାରିହଜାର ମତ ଓ ପନ୍ଥା ହେବା ହେତୁ ଅନେକଙ୍କର ଧାରଣା ଯେ, ଏହା ହିନ୍ଦୁମାନଙ୍କର ଦୁର୍ବଳତା । କିନ୍ତୁ ପ୍ରକୃତପକ୍ଷେ ଏହାହିଁ ହିନ୍ଦୁ ସମାଜର ବଳ । ଅପରକୁ ସ୍ୱୀକୃତି ଦେଇ, ଅପରକୁ ଘୃଣା ନ କରି, ଆପଣାର ସ୍ୱତନ୍ତ୍ର ଜାତି ଓ ମତ ପ୍ରତିଷ୍ଠା କରିବାର ଅଧିକାର କ୍ୱଚିତ୍ ଦେଖିବାକୁ ମିଳେ । ଏଥିରୁ

ଦେଖାଯିବ ଯେ, ଅପରକୁ ସମ୍ମାନ ଦେବା ହିନ୍ଦୁତ୍ୱର ମୂଳକଥା । ଏହାର ଅର୍ଥ ନୁହେଁ ଯେ, ହିନ୍ଦୁର ନିଜତ୍ୱ ନାହିଁ । ସକଳ ବୈଷ୍ଣବ ପୂଜିବ, ଆପଣା ସୂତ୍ର ନ ଛାଡ଼ିବ । ଭାଗବତରେ କେଡ଼େ ସରଳ କଥାରେ ହିନ୍ଦୁତ୍ୱର ମର୍ମକଥାର ପ୍ରକାଶ ପାଉଚି ।

ହିନ୍ଦୁଧର୍ମରେ କର୍ମକାଣ୍ଡର ପ୍ରାଧାନ୍ୟର ପ୍ରତିବାଦ କରି ବୌଦ୍ଧ, ଜୈନ, ଶିଖ ଧର୍ମ ପରି ଧର୍ମର ସୃଷ୍ଟି ହୋଇଚି । ଏମାନେ ଭାରତୀୟ ଅର୍ଥରେ ହିନ୍ଦୁ । ମୁସଲମାନ, ଖ୍ରୀଷ୍ଟିଆନ୍ ଆଦି ଧର୍ମ ଭାରତକୁ ଆସିଲା ପରେ ଭାରତୀୟତ୍ୱ ଗ୍ରହଣ କରିଛନ୍ତି । Indian Muslim, Indian Christian ଆଦି କହିଲାବେଳେ ଆମ ଜିଭ ଅଟକେ ନାହିଁ । କିନ୍ତୁ ହିନ୍ଦୁ ମୁସଲମାନ, ହିନ୍ଦୁ ଖ୍ରୀଷ୍ଟିଆନ୍ କହିବାକୁ ଆମ ଆଧୁନିକ ମନ ନାରାଜ । ଯଦି ଈଶ୍ୱରଙ୍କୁ ପାଇବା ପାଇଁ ବିଭିନ୍ନ ପନ୍ଥା ସ୍ୱୀକାର କରିବା ହିନ୍ଦୁତ୍ୱ, ଯଦି ଛ ଆସ୍ତିକଦର୍ଶନ ଆଉ ଛ ନାସ୍ତିକଦର୍ଶନ ସ୍ୱୀକାର କରୁଥିବା ସଭିଏଁ ହିନ୍ଦୁ, ତେବେ ହିନ୍ଦୁ ମୁସଲମାନ, ହିନ୍ଦୁ ଖ୍ରୀଷ୍ଟିଆନ୍ ସ୍ୱୀକାର କରିବାରେ ଆପତ୍ତି କେଉଁଠି ? ହିନ୍ଦୁ କହିଲେ ଯେମିତି ବୈଷ୍ଣବ, ଶୈବ, ଶାକ୍ତ, ବୌଦ୍ଧ, ଜୈନ, ଶିଖ୍ ସମସ୍ତଙ୍କୁ ବୁଝାଏ ସେଇମିତି ମୁସଲମାନ, ଖ୍ରୀଷ୍ଟିଆନ୍‌ଙ୍କୁ ହିନ୍ଦୁ କହିବାର ଆପତ୍ତି କେଉଁଠି ?

ଯେଉଁମାନେ ହିନ୍ଦୁ ଧର୍ମକୁ ମୁସଲମାନ, ଶିଖ ବା ବୈଷ୍ଣବ ଧର୍ମ ସହିତ ସମାନ କରି ଦେଖନ୍ତି, ସେମାନେ ହିନ୍ଦୁ ଧର୍ମର ମୂଳକଥାକୁ ବୁଝନ୍ତି ନାହିଁ । ଭାରତ ଏକ ବହୁ ଭାଷାଭାଷୀ, ବହୁ ଜାତି, ବହୁ ମତ ଓ ପନ୍ଥ ଓ ବହୁ ସଂସ୍କୃତିର ଦେଶ । ଯେଉଁ ମୌଳିକ ନୀତି ଏଇ ବହୁତ୍ୱକୁ ଏକ ସୂତ୍ରରେ ବାନ୍ଧି ରଖିଚି ତାହାହିଁ ଧର୍ମ । ଧାରଣାତ୍ ଧର୍ମ ଇତ୍ୟାହୁ । ଧୃ ଧାତୁରୁ ଭମନ୍ ପ୍ରତ୍ୟୟରେ ଧର୍ମ ନିଷ୍ପନ୍ନ । ଏଇ ଧୃ ର ଅର୍ଥ ଧରିରଖିବା । ଯାହା ଏଇ ବିଭିନ୍ନତାକୁ ଏକାଠି ଧରି ରଖିଛି ତାହାହିଁ ଧର୍ମ । ଭାରତରେ ଏହା ହିନ୍ଦୁଧର୍ମ । ଭାରତର ଯେଉଁମାନେ ହନ୍ଦୁଧର୍ମକୁ ବୈଷ୍ଣବ, ବୌଦ୍ଧ, ଶିଖ୍, ମୁସଲମାନ ବା ଖ୍ରୀଷ୍ଟିଆନ୍ ଧର୍ମର ବିରୋଧୀ ଭାବରେ ଦେଖନ୍ତି, ସେମାନେ ଅଧର୍ମୀ, ସେମାନେ ନିଜକୁ ହିନ୍ଦୁ ଭାବରେ ପରିଚୟ ଦେବାକୁ ଅଯୋଗ୍ୟ ।

ଭାରତରେ କେବଳ ହିନ୍ଦୁ ସଂପ୍ରଦାୟରେ ବିଭକ୍ତ ନୁହଁନ୍ତି । ଭାରତରେ ଅତି କମ୍‌ରେ ୭୨ଟି ମୁସଲମାନ ସଂପ୍ରଦାୟ ଓ ଶତାଧିକ ଖ୍ରୀଷ୍ଟିଆନ୍ ସଂପ୍ରଦାୟ ଅଛନ୍ତି । ବିଭିନ୍ନ ଜାତିର ଲୋକେ ମୁସଲମାନ ଓ ଖ୍ରୀଷ୍ଟିଆନ୍ ଧର୍ମକୁ ଧର୍ମାନ୍ତରିତ ହୋଇଥିବାରୁ ବଡ଼ସାନ ଜାତିଭେଦ ମଧ ସେହି ସେହି ଧର୍ମମାନଙ୍କ ମଧରେ ଦେଖିବାକୁ ମିଳେ । ପଞ୍ଜାବରେ ପ୍ରତି ହିନ୍ଦୁ ପରିବାରର ଚତୁର୍ଥ ପୁତ୍ର ଶିଖ ହେଉଥିବାରୁ ହିନ୍ଦୁ ଓ ଶିଖଙ୍କ ମଧରେ ଜାତିର ଯୋଗ ବଡ଼ ଗଣ । ଅରୁଣାଚଳର ଟାଓ୍ୱାଙ୍ଗରେ ପ୍ରତି ପରିବାରର ତୃତୀୟ ପୁତ୍ର ଧର୍ମଗୋଷ୍ଠୀରେ ଯୋଗ ଦେବାର ବିଧାନ ଥିବାରୁ ସାଧାରଣ ଜୀବନ ଓ ଧର୍ମ ଜୀବନ ଭିତରେ ସଂପର୍କ ନିବିଡ଼ । ଆମ ଦେଶରେ ଧର୍ମ ନିରପେକ୍ଷତା, ଧର୍ମକୁ ଅସ୍ୱୀକାର କରିବା ନୁହେଁ । ବିଭିନ୍ନ ଧର୍ମକୁ ସ୍ୱୀକାର କରିବା, ବିଭିନ୍ନ ଧର୍ମକୁ ସମ୍ମାନ ଦେବା ଓ ପରମାର୍ଥ ଲାଭ ପାଇଁ ବିଭିନ୍ନ ପନ୍ଥାକୁ ସ୍ୱୀକାର କରିବା ।

ଭାରତରେ ମନ୍ଦିର, ମସଜିଦ୍, ଗୀର୍ଜା, ଗୁରୁଦ୍ୱାର ଗୋଟକୁ ଗୋଟ ଲାଗି ପରସ୍ପର ନିର୍ଭର ହୋଇ ରହିଛନ୍ତି । ଅମରନାଥକୁ କୋଉ ମୁସଲମାନ ବାଟ ଦିଦେଇ ଥିବାରୁ ଆଜି ବି ତାଙ୍କ ବଂଶଧରମାନେ ଅର୍ଚ୍ଚନାର ଅଂଶ ଭୋଗ କରୁଛନ୍ତି । ନିଜାମୁଦ୍ଦିନ୍ ଆଲୁଓ୍ୱାଲିଆଙ୍କ ମସଜିଦ୍ ହିନ୍ଦୁ ମୁସଲମାନ ସମସ୍ତଙ୍କ ପାଇଁ ଖୋଲା । ଭେଲାଙ୍କନୀରେ ମେରୀ ମୂର୍ତ୍ତିଙ୍କ ଦର୍ଶନ ପାଇଁ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ୍ ସମସ୍ତେ ଯାଆନ୍ତି । କେରଳର ଆୟାପ୍ପାଙ୍କ ଦର୍ଶନ ଆଗରୁ ମୁସଲମାନ ପୀରଙ୍କ ଦର୍ଶନ ଅବଶ୍ୟମ୍ଭାବୀ । ବାରାଣସୀ ବିଶ୍ୱନାଥ ମୁସଲମାନ ମସଜିଦ କାନ୍ଥକୁ ଲାଗି ଶହ ଶହ ବର୍ଷ ଧରି ରହିଛନ୍ତି । ଅପର ଧର୍ମ ପ୍ରତି ଅସହଣୀ ହୋଇ କେହି ମୁସଲମାନ ରାଜା ହିନ୍ଦୁ ମନ୍ଦିରକୁ ଲାଗି ମସଜିଦ୍ ତିଆରି କରିଛନ୍ତି । କିନ୍ତୁ ତାଙ୍କ ଅଜାଣାରେ ସିଏ ହିନ୍ଦୁ ଧର୍ମର ବଡ଼ ସମର୍ଥନ କରିଛନ୍ତି ।

ଆଜି ଯେଉଁମାନେ ମସଜିଦ୍ ଭାଙ୍ଗି ମନ୍ଦିର ଗଢ଼ିବା କଥା କହୁଛନ୍ତି, ସେମାନେ ଭୁଲି ଯାଉଛନ୍ତି ଯେ, ଏ ଦେଶରେ ଶହଶହ ବୌଦ୍ଧମନ୍ଦିର ଭାଙ୍ଗି ହିନ୍ଦୁ ମନ୍ଦିର ଗଢ଼ାଯାଇଛି । ଶୈବମନ୍ଦିର ଭାଙ୍ଗି ବୈଷ୍ଣବମନ୍ଦିର ଗଢ଼ାଯାଇଚି । ଇତିହାସକୁ ସାକ୍ଷୀ ରଖି ଏ ପାପର ପ୍ରାୟଶ୍ଚିତ ପାଇଁ କଣ ସେମାନେ ପ୍ରସ୍ତୁତ ? ପୁଣି ଇତିହାସର କେତେ ପଛକୁ ଯାଇ ଆମେ ବନ୍ଦ ହେବା ? ମୁଣ୍ଡାମାନଙ୍କୁ ହଟେଇ ଦ୍ରାବିଡ଼ମାନେ ଆସିବା ଆଉ ଦ୍ରାବିଡ଼ମାନଙ୍କୁ ପଛକୁ ହଟେଇ ଆର୍ଯ୍ୟମାନେ ଆସିବାର ଇତିହାସକୁ ଧରି ପ୍ରାୟଶ୍ଚିତ ଲୋଡ଼ି ବସିଲେ ଭାରତୀୟତ୍ୱ ରହିବଟିକି ?

ଆଜି ଯେଉଁମାନେ ହିନ୍ଦୁଧର୍ମ ନାଁରେ ମସଜିଦ୍ ଭାଙ୍ଗି ମନ୍ଦିର ଗଢ଼ିବା କଥା କହୁଛନ୍ତି, ସେମାନେ ଅହିନ୍ଦୁ । ଭାରତୀୟ ହେଲେ ବି ଭାରତୀୟତ୍ୱ ତାଙ୍କ ଭିତରେ ନାହିଁ । ଗାନ୍ଧୀ ଯେତେବେଳେ ରାଜନୀତି ସହିତ ଧର୍ମର ସମ୍ବନ୍ଧ କଥା କହୁଥିଲେ ଏଇ ବ୍ୟାପକ ଅର୍ଥରେ ଧର୍ମଧାରଣା ତାଙ୍କ ମନରେ ଥିଲା । ଆଜି ଯେଉଁମାନେ ଧର୍ମକୁ ରାଜନୀତି ସହିତ ଯୋଡୁଛନ୍ତି ସେମାନେ ଅନ୍ଧଦୃଷ୍ଟି ସଂପନ୍ନ । ଇତିହାସକୁ ପଛକୁ ଘୁଞ୍ଚେଇବାର ଚେଷ୍ଟା ସେମାନଙ୍କର ବିଫଳ ହେବ । କିନ୍ତୁ ଏଥିପାଇଁ ଭାରତକୁ ଉଚ୍ଚ ମୂଲ୍ୟ ଦେବାକୁ ପଡ଼ିବ ।



# ମନ ଖରାପ

କେତେଦିନ ହେଲା ମୁଁ ଭାବୁଚି, ମନ ଖରାପ ହୁଏ କାହିଁକି ? କିଓ ତମ ମୁହଁ କାହିଁକି ଶୁଖିଯାଇଚି ? ମନ ଖରାପ । ମୁହଁ ତ ମନର ଦର୍ପଣ । ତେଣୁ ମନ ଖରାପ ହେଲେ ମୁହଁରେ ତା ଛାଇ ପଡ଼ିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାଇଁ । ମନ ଖରାପ ହେଲେ କେତେବେଳେ ବାହାରେ ଲୁହ ଝରେ ତ କେତେବେଳେ ଭିତରେ ଲହୁ । ମନ ଖରାପ ଅତି ବେଶୀ ହେଲେ

ମଣିଷ କେତେବେଳେ ଆପଣା ଜୀବନ ନିଏ ତ କେତେବେଳେ ପରର । କଣ ଏଇ ମନ ଖରାପ ?

ଟୁନି କହିଲା, ପିଲାଏ ଦୂରରେ ରହିଲେ । କାହାରିଠୁ କିଛି ଖବର ନ ପାଇଲେ ବାର ଚିନ୍ତା ମନକୁ ଆସେ । ଆଗେ ମନ୍ଦ, ପଛେ ଭଲ । ମନ ଖରାପ ହବା ତ ସ୍ୱାଭାବିକ । ମୁଁ କହିଲି, ହଁ । ବୟସ ତ ହେଲା । ଏଣିକି ପିଲାଏ ହେଲେ ଆଗ । ମୁଁ ପଛ । ଟୁନି ଟିକିଏ ଛଳ ରାଗ କରି କହିଲା, ପିଲାଏ କଣ ଖାଲି ମୋର, ତମର ନୁହଁ ? ମୁଁ କହିଲି ଆଜିକି ପଚିଶ ବର୍ଷ ତଳର କଥା ମନେ ପକେଇଲ । ଯେତେବେଳେ ପିଲେ ନ ଥିଲେ ସେତେବେଳେ ମନ ଖରାପ ହେଉ ନ ଥିଲା ? ଟିକିଏ ମୁରୁକି ଟୁନି କହିଲା, ବୟସ କଣ ଗଛ ପତରରେ ବସିଚି ? ବୁଢ଼ାଟିଏ ହେଲଣି, ଲାଜ ଲାଗୁନାହିଁ ! ମୁଁ କହିଲି ନାଁ । ପିଲାବେଳେ ଲାଜ ଲାଗୁଥିଲା । ଆଜିକାଲି ଆଉ ଲାଜ ନାଇଁ । ସେତେବେଳେ ମୁଁ ଡ଼େରିକରି ଆସିଲେ ତମ ମନ ଖରାପ ହେଉଥିଲା । ନ କହି କୁଆଡ଼େ ଏକୁଟିଆ ଚାଲିଗଲେ ମନ ଖରାପ ହେଉଥିଲା । ମନ ଯେମିତି ଖାଲି ମୋ ନିର୍ଭର । ବୟସ ଗଡ଼ିଲା । ଅଏସ କମିଲା । ପିଲାଏ ବଡ଼ ହେଲେ । ଏଣିକି ମନ ପିଲା ନିର୍ଭର । କଣ ଏମିତି କହୁଚ କହି ଟୁନି ଉଠି ଚାଲିଗଲା ।

ଆଜି ମନଟା ପିଲାଦିନକୁ ଚାଲି ଯାଉଚି । ପିଲାଦିନେ ଅପା କି ମୋ ସାନ ଭଉଣୀ ଟୁନି ମୋ ସାଙ୍ଗରେ ବାଦ ଲଗେଇ ଭଲ ଜିନିଷରୁ ଟିକିଏ ବେଶୀ ଖାଇବା ଅଭିନୟ କଲେ ବି ମୋ ମନ ଖରାପ ହେଉଥିଲା । ପୁଣି କୌଣସି କାରଣରୁ ସେ ଦିହିଁଙ୍କ ମନ ଖରାପ ହେଲେ ମୋ ମନ ଖରାପ ହେଉଥିଲା । ବାପା ବୋଉ ରାଗିଲେ ମୋ ମନ ଖରାପ ହେଉଥିଲା । ଟିକିଏ ବଡ଼ ହୋଇ ସ୍କୁଲକୁ ଗଲାଦିନୁ ଏଇ ମନଖରାପର ଢ଼ଙ୍ଗ ବଦଳିଲା । କ୍ଲାସରେ ଭଲ ନ କଲେ ମନ ଖରାପ । ହେଡ଼ମାଷ୍ଟ୍ରେ ସବୁ ଶନିବାର ଶେଷ ପିରିଅଡ଼ ଲମ୍ୱାଇ ଅଧିକ ଅଧଘଣ୍ଟାଏ ନିଅନ୍ତି । ଥରେ ଠିକ୍ ସମୟରେ ଘଣ୍ଟା ବଜେଇ କ୍ଲାସ ବନ୍ଦ କରିଦେଲା ପରେ ମନ ଖରାପ ହେଲା ।

ରାଜନୀତିରେ କେତେଥର କେତେ କାରଣ ପାଇଁ ମନ ଖରାପ ହୋଇଚି ? ଗରୀବ ଦୁଃଖି ଅରକ୍ଷିତଙ୍କ କଷ୍ଟ ଦେଖି ମନଖରାପ ନୋହିଲେ ସେକାଳେ କୌଣସି ଯୁବକ ରାଜନୀତିକି ଆସୁ ନ ଥିଲେ । ସେତେବେଳେ ଗାନ୍ଧୀବାଦର ମହକ ସାଙ୍ଗକୁ ଲୋହିଆ ଜୟପ୍ରକାଶଙ୍କ ସାମ୍ୟବାଦ ଯୁବତୀ ଯୁବକଙ୍କୁ ପ୍ରେରଣା ଦେଉଥିଲା । କୌଣସି ଲୋକ ପଇସା ପାଇଁ ହେଉ କି ଆଦର୍ଶ ପାଇଁ ହେଉ ଆପଣା ଜାତିଧର୍ମ କି ଦେଶର ମମତା ଛାଡ଼ିଲେ ଆମ ମନ ଖରାପ ହେଉଥିଲା । ଆମେ ପିଲାଦିନୁଁ ଶୁଣି ଆସିଛୁ, 'ସକଳ ବୈଷ୍ଣବ ପୂଜିବ । ଆପଣା ସୂତ୍ର ନ ଛାଡ଼ିବ' । ତେଣୁ କାହାରି ଅପମାନ ହେଲେ, ପୂଜ୍ୟପୂଜା ନୋହିଲେ ମନ ଖରାପ ହେଉଥିଲା ।

ଦାୟିତ୍ୱ ବଢ଼ିଲା ବୟସ ବଢ଼ିବା ସାଂଗେ ସାଂଗେ । ପିଲାଦିନୁ ଯୋଉ ଭାବରେ ବଢ଼ି

ଆସିଲୁ ସବୁର ଗାର ମନରେ, ଛାତିରେ ଟଣା ହୋଇ ରହିଚି । ତେଣୁ ତାହାକୁ ବାସିତ୍ୱହୀନ ଦେଖିଲେ ମନ ଖରାପ ଲାଗିଲା । ସମାଜରେ ଯାହା ଅଚଳ ତାକୁ ଭାଙ୍ଗିବା, ଯୋଡଥିରେ ଜଙ୍କ ଲାଗି ଯାଇଚି ବା ଶିଉଳି ବସି ଯାଇଚି ତାକୁ ସଫାକରିବା ଯୌବନର କାମ । ଯିଏ ଆପଣା ସାର୍ଥକ ହୋଇ ଏ ସବୁ ନ କଲା, ତା ପାଇଁ ଯେତିକି ମନ ଖରାପ, ଯିଏ ଅନ୍ଧ ବିଚାର ମୋହରେ ଚଳନ୍ତି ସାମାଜିକତାର ମୂଳ ଖୁଣ୍ଟିଗୁଡ଼ିକ ଉପାଡ଼ିବାରେ ବ୍ୟସ୍ତ ତା ପାଇଁ ସେତିକି ମନ ଖରାପ । ମୋଟ ଉପରେ ବୟସ ବଢ଼ିବା ସାଙ୍ଗେ ସାଙ୍ଗେ ମନ ଖରାପ ଯେମିତି ଚକ୍ରବୃଦ୍ଧି ସୁଧ ଆଦାୟ କରିବାରେ ବ୍ୟସ୍ତ ।

ଚୁନି କହିଲା, କଣ ସକାଳଟାରୁ ମୁହଁ ମାଡ଼ିଦେଇ ଲେଖୁଚ । ଦେଖିଲ ଆମ ଦାଣ୍ଡ ଦୁଆରେ କୋଉ ବୁଲା କୁକୁର କି ସୁନ୍ଦର ପିଲା କରିଛି । ଖବର କାଗଜର ପ୍ରଥମ ପୃଷ୍ଠା ଯାକ ରକ୍ତ । କୋଉଠି ବୋମା ଦେଇ ତିନିଶ ଯାତ୍ରୀ ସମେତ ଉଡ଼ାଜାହାଜ ଉଡ଼େଇ ଦିଆ ହେଇଚି ତ କୋଉଠି ମନ ନ ଥିବା ଲୋକଙ୍କ ଅଚାନକ ଗୁଳିରେ ନିରୀହ ଲୋକ ଦଶଜଣ ମରିଛନ୍ତି । ଏଇ ଅଚାନକ ମରଣରେ, ଯିଏ ଗଲେ ସେମାନଙ୍କ ମନର ସୁଖ ଦୁଃଖକୁ କିଏ ପଚାରୁଚି ? ସେମାନଙ୍କ ଉପରେ ନିର୍ଭର କରିଥିବା ଜଗତର ମନର ଛଟପଟ ଦେଖିବାକୁ କାହାର ବେଳ ଅଛି ? ମନ ଖରାପ କଥାଟା ଅଭିଧାନରୁ ଉଠେଇ ଦେଲେ ଯାଏ । ଭାଗବତ ଲେଖିଥିଲା, ''ମନ ତୋହର ନିଜ ଗୁରୁ, ଉଦ୍ଧବ କେତେ ତୁ ପଚାରୁ ?'' ଆଜିକାଲି ମନ ନାଇଁ କି ସ୍ୱୀକାର କଲାପରି ଗୁରୁ ନାହାଁନ୍ତି । ମନକୁ ଗୁରୁ ବୋଲି ସ୍ୱୀକାର କରିବାର ମାନସିକତା ନାଇଁ । ସମାଜର ଏଇ ଶୃଙ୍ଖଳା ଭାଙ୍ଗିଗଲେ ଆମ ସଂସ୍କୃତି ଲୋପ ହେବ । ଆମେ କିଛି ଦିନ ମଲାଙ୍ଗ ହୋଇ ହୁଏତ ରହିବା । କିନ୍ତୁ ଭାରତୀୟତା ଯିବ ।

ଏମିତି ଭାବି ଭାବି ମନ ଖରାପ କରି ବସିଲା ବେଳକୁ ପେପି ଆସି କହିଲା, ବାପା, ଆମ ଅଶୋକ ଗଛରେ ନୂଆ କଢ ହେଇଚି । କୁକି କିହଲା ବାପା, ଦେଖିଲଣି, ଭାଇ ଯୋଉ ସୋଇଙ୍କାଙ୍କ ନାଟକ କରେଇଥିଲା, ସିଏ ନୋବେଲ ପୁରସ୍କାର ପାଇଲେ । ଇଏତ ଜୀବନଚକ୍ର । ଘନ ଅନ୍ଧାର ଭିତରେ ସାନ ବତୀଟିଏ ଥିଲେ ଅନ୍ଧାରକୁ ଚାହିଁ ମନ ଖରାପ କରିବ ନା ବତୀକି ଚାହିଁ ଅନ୍ଧାର ହଟିବା ଆନନ୍ଦରେ ନୂଆ କଢ଼କୁ ଚାହିଁବ ?



# ଖେଚଡ଼ କଥା

ଉଡ଼ାଜାହାଜ ଘାଟିରେ ଛ ଘଣ୍ଟା ବସିଲା ପରେ ଯଦି ଖେଚଡ଼ କଥା ମନକୁ ଆସିଲା, ଆପଣ ନିଶ୍ଚେ ଆପତ୍ତି କରିବେ ନାଇଁ । ବୟସ ପଞ୍ଚାବନ ହେଲା ଜାଣିଲେ, ସେମିତି ବାଳବୃଦ୍ଧ ସମାନ କହି ଅଧିକାଂଶ ଖେଚଡ଼ କଥାକୁ ମୁରୁକି ହସାରେ ଗ୍ରହଣ କରିନେବେ, ଯେମିତି

ସେ ଦିନର ଭୋଜି ସଭାରେ ସ୍ତ୍ରୀ ପୁରୁଷ ସଭିଏଁ ଗ୍ରହଣ କରିଥିଲେ ।

- ଏକ -

ସେଦିନ ଗୋବିନ୍ଦ ବାବୁ ହାତୁଡ଼ି ଧରି କଣ୍ଟା ବାଡ଼େଉଥାନ୍ତି । ପଥର କାନ୍ଥ ନୁହେଁ । ତେବେ ବି କଣ୍ଟା ଯାଉନାହିଁ । ତନ୍ମୟ ହୋଇ କଣ୍ଟା ବାଡ଼େଉଛନ୍ତି । କଣ ହେଲା କେଜାଣି ହଠାତ୍ ହାତୁଡ଼ି ଉଇଟି ଗଲା । ମୁଣ୍ଡରେ ହାତୁଡ଼ି ପାହାର ପଡ଼ି ଗୋଟାଏ ବଡ଼ ଆବୁ ହୋଇଗଲା । ଗୋବିନ୍ଦ ବାବୁ ଘରୁ ବାହାରି ଆସିଲେ । ଯିଏ ଦେଖିଲା ପଚାରିଲା କଥା କଅଣ ? ଗୋବିନ୍ଦ ବାବୁଙ୍କର ଗୋଟିଏ ଜବାବ, ମୁଁ କେଡ଼େ ବୋକା ଜାଣିଲାରୁ ଆପେ ମୁଣ୍ଡକୁ ପାହାରେ ଦେଲି । ଯେତେ ଯିଏ ପଚାରିଲେ ସେଇ ଏକା ଜବାବ । ଆପଣା ହସ୍ତେ ଜିହ୍ବା ଛେଦୀ । କେ ତାର ଅଛି ପ୍ରତିବାଦୀ ?

ଯୋଉ ଦିନ ଗୋବିନ୍ଦବାବୁଙ୍କ ଚ଼ଡ଼ିଦୋସ୍ତ ଗୋପାଳବାବୁ ପଚାରିଲେ, ସେ ଦିନ ଗୁମର ଫିଟିଗଲା । 'କିରେ ଗୋବିନ୍ଦ କଥା କଣ' ? ଆରେ ଭାଇ, କଣ କହିବି । ମୁଁ ଗଲା ମାସରେ ପ୍ୟାରିସ୍ ଯାଇଥିଲି । ମୋ ହୋଟେଲରେ ମୋ ପାଖ ଘରେ ଜଣେ ସୁନ୍ଦରୀ ରୂପସୀ ଥିଲେ । ସେ ଦିନ ସଞ୍ଜବେଳେ ମତେ ସିଏ କହିଲେ ଯେ ତରତରରେ ଆସିବାରୁ ସେ ତାଙ୍କ ରାତିପିନ୍ଧା ଛାଡ଼ି ଆସିଛନ୍ତି । ମୁଁ ମୋର ସଫା ପାଇଜାମା ତାଙ୍କୁ ଦେଲି । କିଛି ସମୟ ପରେ ଭଦ୍ରମହିଳା ପୁଣି ଆସିଲେ । କହିଲେ ଶୀତ ହେଉଚି । ମୁଁ ତାଙ୍କୁ ମୋ ଶାଲ ଦେଲି । ମଝି ରାତି । କବାଟରେ ଠକ ଠକ ଶବ୍ଦ । ଭଦ୍ରମହିଳା କହିଲେ ମତେ ବେଶ ଥଣ୍ଡା ଲାଗୁଚି । ମୁଁ ମୋର କମ୍ବଳଟି ତାଙ୍କୁ ଦେଲି । ଭଦ୍ରମହିଳା ଶେଷ ରାତିରେ ଥରେ ଆସିଥିଲେ । ମୁଁ କହିଲି ଆପଣଙ୍କ ପାଖ ଖଟରୁ ଘୋଡ଼ିହେଲା ନେଇ ଯାଆନ୍ତୁ । ଭଦ୍ରମହିଳା ଚାଲିଗଲେ । ତା ପରେ ଆଉ ତାଙ୍କ ସାଙ୍ଗରେ ଦେଖା ହୋଇ ନାହିଁ । ତାଙ୍କର ଆଶ୍ଚର୍ଯ୍ୟ ଆଚରଣ ବିଷୟରେ ମୁଁ ବହୁତ ଭାବିଚି । ଆଜି କଣ୍ଟା ବାଡ଼େଉଥିବା ବେଳେ ହଠାତ୍ ସବୁ କଥାର ଅର୍ଥ ପ୍ରାଞ୍ଜଳ ହୋଇଗଲା । ମୁଁ କେଡ଼େ ବୋକା ଜାଣିଲାରୁ ହାତୁଡ଼ି ଆପଣା ଛାଏଁ ମୁଣ୍ଡକୁ ଚାଲିଗଲା ।

- ଦୁଇ -

ଦିଜଣ ବନ୍ଧୁ ଚାଲିଚାଲି ଯାଉଥିଲେ । ଗୋଟିଏ ଜାଗାରେ ରାସ୍ତା ଦିଭାଗ ହୋଇଯାଇଚି । ପଚାରି ପଚାରି ବୁଝିଲେ ମାଇଲିଏ ପରେ ଦୁଇଟି ରାସ୍ତା ମିଶି ଯାଇଚି । କଥା ହେଲା, ଦିହେଁ ଦି ବାଟରେ ଯିବେ । ଏକାଠି ଭେଟିଲେ ରାସ୍ତା ବିଷୟରେ ଆପଣା ଅନୁଭବ କୁହାକୁହି ହେବେ । ଜଣେ ଯାଇ ରାସ୍ତା ଛକରେ ପହଞ୍ଚିଲା ପରେ ଦେଖେ ଆର ଜଣକ ନୂଆ ଚକ୍ ଚକ୍ ଅତି ସୁନ୍ଦର ଗୋଟିଏ କ୍ୟାଡ଼ିଲାକ୍ ଗାଡ଼ିରେ ବସିଛି । 'କିଓ କଥା କଣ ?' ବନ୍ଧୁ ଜଣକ ମୁରୁକି ହସରେ ମେଞ୍ଛେ ଖୁସି ବିଞ୍ଚାଡ଼ି ଦେଇ କହିଲେ, ମୁଁ ଯେତେବେଳେ ରାସ୍ତା ମୋଡ଼ ଫେରେ ଦେଖିଲି ଗୋଟିଏ ସୁନ୍ଦରୀ ଝିଅ ଏଇ ଗାଡ଼ିରେ ବସିଚି ? ମତେ ବେଶ୍ ଇଶାରାରେ ପଚାରିଲା ଗାଡିରେ ବସିବ ? ମୁଁ ଯେମିତି ଉଠି ବସିଚି ଗାଡ଼ି ଚଳେଇ

ସିଏ ସିଧା ଜଂଗଲ ଭିତରକୁ ଚାଲିଗଲା । ମତେ ଅବାକ୍ ହେବାର ଦେଖି ସିଏ ଆପଣା ଲୁଗାପଟା ଖୋଲି ମୋ ଆଡ଼କୁ ଫୋପାଡ଼ି ଦେଲା । କି ସୁନ୍ଦର ଦିହ ତମେ କଳ୍ପନା ବି କରି ପାରିବ ନାହିଁ । ଟିକିଏ ହସି ମତେ କହିଲା ଯାହା ନବାର ନିଅ । ମୁଁ ଗାଡ଼ିଟି ନେଇ ଚାଲି ଆସିଲି । ଏ ବନ୍ଧୁ କଥା ଶୁଣି ଗମ୍ଭୀର ହୋଇ ଯାଇଥିଲେ । କିଛି ସମୟ ଭାବି କହିଲେ, ହଁ ତମେ ଠିକ୍ କରିଚ । ଲୁଗାପଟା ଗୁଡ଼ା ଆଣି କଣ କରିଥାନ୍ତ ?

- ତିନି -

ଆପଣ ନିଶ୍ଚେ ଗସ୍ତରେ ଯାଇଛନ୍ତି । ଗସ୍ତର ଭଲମନ୍ଦ ବିଷୟରେ ଆପଣଙ୍କୁ ସବୁ ଜଣା । ହେଲେ ମୋର ବନ୍ଧୁଙ୍କର ଏଇ ଅଭିଜ୍ଞତା ଆପଣଙ୍କୁ ନିଶ୍ଚେ ନୂଆ ଲାଗିବ । ମୋ ବନ୍ଧୁ ଲକ୍ଷ୍ମଣ ବାବୁ ଗସ୍ତରେ ଯାଇଥିଲେ । କୋଉ ଜଙ୍ଗଲ ଭିତରେ ଡାକବଙ୍ଗଳା । ପାଖରେ ଦାନା ଦଉବ ନାହିଁ । ଦିନ ରତରତ ହଉଚି । ଲକ୍ଷ୍ମଣବାବୁ ଯେତେବେଳେ ଅତି କ୍ଲାନ୍ତ ହୋଇ ସେଠି ପହଞ୍ଚନ୍ତି, ସେଇ ବଖରାକ ବଙ୍ଗଳା ଆଉ ଜଣେ ମହିଳା ଅଫିସର ଦଖଲ କରି ସାରିଛନ୍ତି । ପାଖଆଖରେ ଯାଗା ନାହିଁ । ଚଉକିଦାର ଫାଟକ ବନ୍ଦ କରି ଯିବାକୁ ବ୍ୟସ୍ତ । ଲକ୍ଷ୍ମଣବାବୁ ଭଦ୍ରମହିଳାଙ୍କ ଅନୁମତି ଚାହିଁଲେ ଦିହେଁ ରାତିଟା କଟେଇବେ ସେଇ ଏକା ଘରେ । ଭଦ୍ରମହିଳା ସ୍ୱସ୍ତିର ନିଃଶ୍ୱାସ ମାରିଲେ । କହିଲେ, ମତେ ଡ଼ର ମାଡ଼ିଥାନ୍ତା । ଭଲ ହେଲା ଆପଣ ରହିଲେ । ଖିଆ ପିଆ ସରିଲା । ଶୋଇବା ବେଳ ହେଲା । ଲକ୍ଷ୍ମଣ ବାବୁ କହିଲେ ଗୋଟିଏ ବୋଲିତ ଖଟ । ଆପଣ ଶୁଅନ୍ତୁ । ମୁଁ ଏଇଠି ତଳେ ବିଛେଇ ଦେଉଚି । ଭଦ୍ରମହିଳା କହିଲେ, ଇଏ କି କଥା ? ଖଟେ ଦିଜଣଙ୍କ ପାଇଁ ଯଥେଷ୍ଟ । ମୁଁ ମଝିରେ ଦିଟା ତକିଆ ଦେଇ ଦେଉଚି । ମୁଁ ଏପଟେ ଶୋଇବି, ଆପଣ ସେପଟେ । ସେଇଆ ହେଲା । ଏମିତି ସେମିତି ହୋଇ ରାତି ପାହିଗଲା । ଭୋର ପାଞ୍ଚଟା ବେଳକୁ ଲକ୍ଷ୍ମଣବାବୁ ବାହାର ବାରଣ୍ଡାରେ ଦାନ୍ତ ଘସୁଛନ୍ତି । ଭଦ୍ରମହିଳା ଆଙ୍ଗୁଠିରେ ଚାବିରିଂଗ ବୁଲେଇ ବୁଲେଇ ବାହାରକୁ ଆସିଲେ । ଭଦ୍ରମହିଳା ଯେମିତି ବାରଣ୍ଡା ଦାଢ଼ରେ ପହଞ୍ଚିଛନ୍ତି, ତାଙ୍କ ଆଙ୍ଗୁଠି ସାମାନ୍ୟ ବଙ୍କେଇ ଗଲା । ଆଉ ଚାବିରିଙ୍ଗ୍ ଅଧାକାଛ ଡ଼େଇଁ ବାହାରେ ପଡ଼ିଲା । ଲକ୍ଷ୍ମଣବାବୁ ବ୍ୟସ୍ତ ହୋଇ କହିଲେ, ଆରେ ଚାବି ବାହାରେ ପଡ଼ିଗଲା । ମୁଁ ଯାଇ ନେଇ ଆସିବି କି ? ଭଦ୍ରମହିଳା ଆଶ୍ଚର୍ଯ୍ୟରେ କହିଲେ, ଗେଟ ତ ତାଲା ବନ୍ଦ । ଆପଣ ଯିବେ କେମିତି ? 'କାହିଁକି ? ମୁଁ ତ ଅନାୟାସରେ ଏଇ ଅଧାକାଛ ଡ଼େଇଁ ଚାବିଟି ନେଇ ଆସି ପାରିବି ।' ଭଦ୍ରମହିଳା ଦୀର୍ଘ ନିଃଶ୍ୱାସ ପକେଇ କହିଲେ, ଥାଉ, ଚଉକିଦାର ଆସିଲେ ଆଣିବ । ଆପଣ ତ କାଲି ରାତିରେ ସାମାନ୍ୟ ତକିଆଟାଏ ଡ଼େଇଁ ପାରିଲେ ନାହିଁ ।

- ଚାରି -

''ବିଜ୍ଞାନର ପ୍ରଗତି ହେବା ଫଳରେ ଆମେ ମଣିଷ ତିଆରି କରିବାର କ୍ଷମତା ହାସଲ

କଲୁଣି । ପ୍ରାଣୀ ବିଜ୍ଞାନର ଦୌଲତରୁ ବୀଜବ୍ୟାଙ୍କ ଖୋଲିବା ସମ୍ଭବ ହେଲାରୁ ଆଜି ଜିନିଅସ ସୃଷ୍ଟି କରିବା ସମ୍ଭବ ।'' ରାଜୁବାବୁ ଏଇ ଖବର ପଢ଼ିବା ଦିନୁ କିପରି ଏ କାମରେ ସାହାଯ୍ୟ କରିବେ ଭାବି ହେଉଛନ୍ତି । ସେ ଯେ ନିଜେ ଜଣେ ଜିନିଅସ ଏ ବିଷୟରେ ତାଙ୍କର ତିଳେ ମାତ୍ର ସନ୍ଦେହ ନାହିଁ । ଏଇଥିପାଇଁ ଖାଲି ତାଙ୍କ ପିଲାଏ ନୁହଁନ୍ତି, ଜଣିଲା ମାନେ ଯେ ଜିନିଅସ ଏଥିରେ ମଧ ସେ ନିଃସନ୍ଦେହ । ଶେଷକୁ ସ୍ଥିର କଲେ ସିଏ ନିଜେ ବୀଜବ୍ୟାଙ୍କକୁ ଯାଇ ଜିନିଅସ ରକ୍ଷଣ ଯୋଜନାକୁ ସାହାଯ୍ୟ କରିବେ ।

ସ୍ୱାଗତ ଘରେ ଯୋଉ ଝିଅଟି ବସିଥିଲା ସିଏ ରାଜୁବାବୁଙ୍କ ପ୍ରସ୍ତାବ ଶୁଣି ଲାଜରା ହେଲା । 'ଆଜ୍ଞା' ଏଠି କେବଳ ସୁସ୍ଥ ଲୋକଙ୍କ ବୀଜ ରଖାଯାଏ । ରାଜୁବାବୁ ଅସନ୍ତୁଷ୍ଟ ହେଲେ । ମୋର ସ୍ୱାସ୍ଥ୍ୟ ବିଷୟରେ ଆପଣ ମୋ ଡ଼ାକ୍ତରଙ୍କୁ ପଚାରି ପାରନ୍ତି । ଆଉ କ୍ଷମତା ? ଅଠାବନରେ ମୋ ଆଡୁ ଶେଷ ପିଲା ହୋଇଥିଲା । ଏବେ ତ ମୁଁ ତ ମାତ୍ର ଅଠଷଠି ପାର ହୋଇଛି । ମୋର ଏଗାର ପିଲା । ସମସ୍ତେ ସୁସ୍ଥ ସବଳ । ସମସ୍ତେ ଗୋଟିଏ ଗୋଟିଏ ଜିନିଅସ । ଆପଣଙ୍କ ବ୍ୟାଙ୍କରେ ମୋ ବୀଜ ନ ରହିଲେ ଦେଶର ଯେଉଁ ସମୂହ କ୍ଷତି ହେବ ସେ ବିଷୟରେ ଭାବିଛନ୍ତି ? ଝିଅଟି ହୁଏତ ଆଉ ତର୍କ କରିବା ସଙ୍ଗତ ମନେ କଲା ନାଇଁ । ''ଆଜ୍ଞା ସେ ପାଖେ ଗାଧୁଆ ଘର । ଆପଣ ଏଇ ଶୋଧନ କରା ବୋତଲ ନିଅନ୍ତୁ । ଏଥିରେ ବୀଜ ସଂଗ୍ରହ କଲାପରେ ଏଠି ଫର୍ମ ପୂରଣ କରିଦେଇ ଯିବେ । ରାଜୁବାବୁଙ୍କ ମୁହଁରେ ହସ ଫିଟିଲା । ବୋତଲଟି ଧରି ସେ ଗାଧୁଆ ଘରକୁ ଗଲେ ।

ଦଶ ମିନିଟ୍ ଗଲା, ପନ୍ଦର ମିନିଟ । ପଚିଶ ମିନିଟ । ଅଧ ଘଣ୍ଟାଏ । ପଇଁତାଳିଶ ମିନିଟ । ଏ ଭିତରେ ନର୍ସ ତିନିଥର ଡ଼ାକି ଗଲାଣି । ଶେଷକୁ ଯେତେବେଳେ ରାଜୁବାବୁ ବାହାରିଲେ ତାଙ୍କ କପାଳରେ ବିନ୍ଦୁ ବିନ୍ଦୁ ଝାଳ । ଧୀର ଗତିରେ ସ୍ୱାଗତ ଘରେ ବସିଥିବା ଝିଅଟିର ଟେବୁଲ ଉପରେ ବୋତଲଟି ରଖି କହିଲେ, ମୁଁ ଗୋଟିଏ ହାତରେ ଚେଷ୍ଟା କଲି । ଦି ହାତ ଲଗେଇଲି । ସମସ୍ତ ଶକ୍ତି ଖର୍ଚ୍ଚ କରିବି ବୋତଲ ଠିପି ଖୋଲି ପାରିଲି ନାହିଁ । ଧନ୍ୟବାଦ ।

